# ଭାରତବର୍ଷର ଇତିହାସ

—:୦:—

ଦ୍ୱିତୀୟ ଭାଗ ।

ଶ୍ରୀ ମଧୁସୂଦନ ଦାଶ, ବି. ଏ. (ଟି) ଙ୍କ ଦ୍ୱାରା

ସଙ୍କଳିତ

---

ମାକ୍‌ମିଲ୍ଲନ୍ ଏଣ୍ଡ୍ କୋ:, ଲିମିଟେଡ୍,

କଲିକତା. ବୋମ୍ବାଇ, ମାନ୍ଦ୍ରାଜ, ଲଣ୍ଡନ

୧୯୨୪

# ସୂଚିପତ୍ର ।

# ଭାରତବର୍ଷର ଇତିହାସ ।

## ଦ୍ୱିତୀୟ ଭାଗ ।

### ଅବତରଣିକା ।

କାହିଁକି ଲୋକେ ଇତିହାସ ପଢ଼ନ୍ତି ଏବଂ ଇତିହାସରେ କଣ ଲେଖା ଥାଏ ଏହି ଦୁଇ ବିଷୟ ତୁମ୍ଭମାନଙ୍କୁ ବର୍ତ୍ତମାନ ସଂକ୍ଷେପରେ ବୁଝାଇବା ।

ଜଣେ ଗୋଟିଏ ମଞ୍ଜି ମାଟିରେ ପୋତିଲେ ଗୋଟିଏ ଗଛ ହୁଏ ଏବଂ ତହିଁରେ ଫଳ ଫଳେ । ମାତ୍ର ମଞ୍ଜିଟି ନ ପୋତିଲେ ଗଛ ହେବ ନାହିଁ, କି ଫଳ ଫଳିବ ନାହିଁ । ଏଠାରେ ମଞ୍ଜିକି ମାଟିରେ ପୋତିବା ହେଲା କାରଣ, ଗଛ ହୋଇ ଫଳ ଫଳିବା ହେଲା ତାହାର କାର୍ଯ୍ୟ । ଯେତେ କାର୍ଯ୍ୟ ପୃଥିବୀରେ ହେଉଥିବାର ଦେଖୁଅଛୁ ଅର୍ଥାତ୍ ଯେତେ ଘଟନା ଘଟୁଅଛି ସମସ୍ତଙ୍କର ଏକ ଏକ କାରଣ ଅଛି । କାରଣ ନ ଥାଇ କାର୍ଯ୍ୟ ନାହିଁ, ଏହା ଭଲରୂପେ ଜାଣିଥିବ ।

କି କାରଣରୁ କି କାର୍ଯ୍ୟ ହୁଏ ଏହା ଜାଣୁଥିବାରୁ ମନୁଷ୍ୟ ଅନ୍ୟାନ୍ୟ ଜୀବଠାରୁ ଶ୍ରେଷ୍ଠ । ମନୁଷ୍ୟ କାର୍ଯ୍ୟର କାରଣ ଜାଣି ମନେରଖେ ବା ଲେଖି ରଖେ । ଯେଉଁ କାରଣର କାର୍ଯ୍ୟ ମନ୍ଦ ହୋଇଥିବାର ତାହାକୁ ଜଣାଥାଏ ସେ କେବେହେଁ ତାହା ସହଜେ କରିବାକୁ ଯାଏ ନାହିଁ । ପ୍ରତ୍ୟେକ ମନୁଷ୍ୟର ଜୀବନରେ ଯେଉଁ ଭଲ ବା ମନ୍ଦ କାର୍ଯ୍ୟ ଘଟେ ତାହାର ଯେପରି କାରଣ ଅଛି, ତଥା ଦେଶରେ ଯେତେବେଳେ ଯାହା ଘଟେ ତାହାର ସେହିପରି କାରଣ ଅଛି । ଦେଶମଧ୍ୟରେ

ଯେତେବେଳେ ଯାହା ଘଟିଥିଲା ତାହା ଏବଂ ତାହାର କାରଣ ଇତି-ହାସରେ ଲେଖାଥାଏ । ସେଗୁଡ଼ିକ ଜାଣିଲେ ଲୋକେ ଦେଶପ୍ରତି ଯେଉଁଗୁଡ଼ିକ ଭଲ ତାହା କର ମନ୍ଦଗୁଡ଼ିକ ପରିତ୍ୟାଗ କରନ୍ତି । ଅତୀତର ମଧ୍ୟ ଯେଉଁ କାରଣ ଘଟିଥିବାରୁ ଯେଉଁ କାର୍ଯ୍ୟଗୁଡ଼ିକ ପୂର୍ବେ ଘଟିଥିଲା ତାହା ଜାଣିପାରିଲେ, ବର୍ତ୍ତମାନର ଘଟନାମାନ ଦେଖି ଭବିଷ୍ୟତରେ କଣ ଘଟିବ ତାହା ମଧ୍ୟ ଲୋକେ ଅନେକ ପରିମାଣରେ ଅନୁମାନ କରି-ପାରନ୍ତି ।

ଆମ୍ଭମାନଙ୍କ ଯେନ ଦେଶ । ଯହିଁରେ ଦେଶର ମଙ୍ଗଳ ହୁଏ, ତହିଁରେ ଆମ୍ଭମାନଙ୍କର ମଙ୍ଗଳ; ଯହିଁରେ ଦେଶର କ୍ଷତି, ତହିଁରେ ଆମ୍ଭମାନଙ୍କର କ୍ଷତି । ସେହି କାରଣରୁ ଆମ୍ଭମାନଙ୍କର ଇତିହାସ ପଢ଼ିବା ଭାରି ଆବଶ୍ୟକ ।

ଆମ୍ଭେମାନେ କିଏ? ଦେଶର ଲୋକସମୂହ ବା ସଂକ୍ଷେପରେ କହିଲେ ଏକ ସମାଜ । ମନୁଷ୍ୟମାନେ ସମାଜ ଛଡ଼ା ରହିପାରନ୍ତି ନାହିଁ । ଏହାର କାରଣ ଏହି ଯେ, ଜୀବନରକ୍ଷା କରିବା ଲାଗି ମନୁଷ୍ୟର ଯାହା ଯାହା ପ୍ରୟୋଜନ, ମନୁଷ୍ୟ ଏକାକୀ ରହିଲେ ସେସମସ୍ତ ନିଜ ବଳରେ ସଂଗ୍ରହ କରିପାରେ ନାହିଁ । ମନେକର ଜଣେ ଲୋକ କୃଷକ । ସେ ଲୁଗା ଦରକାର କରେ, ସୁତରାଂ ତାହାର ଜଣେ ତନ୍ତି ଆବଶ୍ୟକ । ସେ ରୋଗ-ନିବାରଣ ନିମନ୍ତେ ଔଷଧ ଦରକାର କରେ, ତାହାର ଜଣେ ବୈଦ୍ୟ ଆବଶ୍ୟକ । ନିଜ କୃଷିକାର୍ଯ୍ୟ ଚଳାଇବା ନିମନ୍ତେ ସୁଦ୍ଧା ତାହାର ଲଙ୍ଗଳ ପ୍ରସ୍ତୁତ କରିବା ଲାଗି ବଢ଼େଇ, ହାତ ହତିଆର ଲାଗି କମାର, କୃଷିଜାତ ଦ୍ରବ୍ୟ ବହନ ସ୍ଥାନକୁ ପଠାଇବା ଲାଗି ଗାଡ଼ିବାଲା, ନାଉରୀ ଇତ୍ୟାଦି ଦରକାର । ସେ ଜଣେ ଲୋକ, ଏହି ସମସ୍ତ କାର୍ଯ୍ୟ ଯେ ନିଜ ହାତରେ କଲେ ତାହାର ଅନେକ ସମୟ ଯିବ ଏବଂ କୌଣସି ଗୋଟିଏ କାର୍ଯ୍ୟ ମଧ୍ୟ ଭଲରୂପେ ନିର୍ବାହ କରି ପାରିବ ନାହିଁ । ସେହି ହେତୁରୁ ସେ

ଅନ୍ୟମାନଙ୍କର ସାହାଯ୍ୟ ପାଇବା ଲାଗି ସମାଜଭିତରେ ବାସ କରେ ଏବଂ ନିଜ କୃଷିଜାତ ଦ୍ରବ୍ୟ ଦେଇ ଅନ୍ୟମାନଙ୍କର ସାହାଯ୍ୟ ଲାଭ-କରେ । କୃଷକପରି ପ୍ରତ୍ୟେକ ଲୋକ ସମାଜର ଅନ୍ୟାନ୍ୟ ଲୋକମାନଙ୍କ-ଠାରୁ ସାହାଯ୍ୟ ପାଏ ଏବଂ ଅନ୍ୟମାନଙ୍କୁ ସାହାଯ୍ୟ ଦେବା ଲାଗି ବାଧ୍ୟ ହୁଏ । ମାତ୍ର ସବୁ ମନୁଷ୍ୟଙ୍କ ସ୍ୱଭାବ ଏକାପରି ନୁହେ । କେହି କେହି ସାହାଯ୍ୟ ଲୋଡନ୍ତି ମାତ୍ର ସାହାଯ୍ୟ ଦେବାକୁ ଭଲ ପାନ୍ତି ନାହିଁ, ବରଂ ଅନ୍ୟର ଅନିଷ୍ଟ କରିବାକୁ ଚେଷ୍ଟା କରନ୍ତି । ସେହି ହେତୁରୁ ଏହି ସମସ୍ତ ଅକାର୍ଯ୍ୟରୁ ଲୋକମାନଙ୍କୁ ରକ୍ଷା କରିବା ନିମନ୍ତେ ସମାଜରେ ଜଣେ ରାଜା ଦରକାର ହୁଏ । ତାହାଙ୍କର ସମସ୍ତଙ୍କ ଉପରେ କ୍ଷମତା ରହେ । ଯେ କେହି ଦୋଷ କରେ ରାଜା ତାହାକୁ ଦଣ୍ଡ ଦିଅନ୍ତି । ଦଣ୍ଡ ଦେବାର ଉଦ୍ଦେଶ୍ୟ ଏହି ଯେ, ଦଣ୍ଡିତ ବ୍ୟକ୍ତି ଆଉ ପରର ଅନିଷ୍ଟ କରିବାକୁ ଯିବ ନାହିଁ ଏବଂ ତାହାର ଦଣ୍ଡ ପାଇବା ଦେଖି ଅନ୍ୟ ଲୋକେ ପରର ଅନିଷ୍ଟ କରିବାକୁ ଯିବେ ନାହିଁ । ଏହାକୁ ରାଜାଙ୍କର ଶାସନ-କାର୍ଯ୍ୟ ବୋଲାଯାଏ । ଲୋକ ଅଳ୍ପ ଥିଲେ ରାଜା ଏହି ଶାସନକାର୍ଯ୍ୟ ନିଜେ ଚଳାନ୍ତି । ଲୋକ ବେଶି ହେଲେ ରାଜା ଅନ୍ୟ ଲୋକ ନିଯୁକ୍ତ କରି ଏହି ଶାସନକାର୍ଯ୍ୟ ଚଳାଇଥାନ୍ତି । ଶାସନକାର୍ଯ୍ୟର ନିର୍ବାହ ନିମନ୍ତେ ରାଜାଙ୍କ ଦ୍ୱାରା ନିଯୁକ୍ତ ଲୋକମାନଙ୍କୁ ରାଜପୁରୁଷ ବୋଲାଯାଏ । ତେଣୁ କି ରାଜା କି ରାଜପୁରୁଷ ସମସ୍ତଙ୍କୁ ମାନି ଆମ୍ଭମାନଙ୍କର ଚଳିବା ଉଚିତ ।

ରାଜାଙ୍କର କାର୍ଯ୍ୟ ଦୁଇ ପ୍ରକାର—୧ ସମାଜର ଲୋକମାନଙ୍କୁ ଶାସନ କରିବା, ୨ ଅନ୍ୟ ସମାଜର ଲୋକ ନିଜ ଅଧୀନସ୍ଥ ସମାଜର ଲୋକ-ମାନଙ୍କର ଅନିଷ୍ଟ କଲେ ସେମାନଙ୍କୁ ଦମନ କରିବା ।

ପୂର୍ବେ ଯାହା କୁହାଗଲା ତହିଁରୁ ତୁମ୍ଭେମାନେ ବୁଝିପାରିବ ଯେ, ପ୍ରତ୍ୟେକ ସମାଜର ଯୋଡ଼ିଏ ଅଙ୍ଗ ଅଛି—ଏକ ଅଙ୍ଗ ରାଜା ଏବଂ ରାଜପୁରୁଷମାନେ ଏବଂ ଦ୍ୱିତୀୟ ଅଙ୍ଗ ସମାଜର ଅନ୍ୟାନ୍ୟ ଲୋକ ବା

ପ୍ରଜାମାନେ । ରାଜା ସ୍ୱୟଂ ସମାଜର ଅନ୍ତର୍ଗତ । ସେ ସମାଜର ପ୍ରତ୍ୟେକ ଲୋକପରି ପରକୁ ସାହାଯ୍ୟ ଦିଅନ୍ତି ଓ ତାହାଠାରୁ ସାହାଯ୍ୟ ପ୍ରାପ୍ତ ହୁଅନ୍ତି । ନିଜ ପ୍ରଜାମାନଙ୍କ ସହିତ ଏହି ସମ୍ବନ୍ଧ ଛଡ଼ା ତାଙ୍କର ଅନ୍ୟ ସମାଜ ବା ତହିଁର ଲୋକଙ୍କ ସହିତ ମଧ୍ୟ ଗୋଟିଏ ବିଶେଷ ସମ୍ବନ୍ଧ ଅଛି । ଏହି ଶେଷୋକ୍ତ ସମ୍ବନ୍ଧ ଥିବାରୁ ରାଜା ଅନ୍ୟ ସମାଜ ବା ତାହାର ରାଜାଙ୍କ ସହିତ ସନ୍ଧି ବା ଯୁଦ୍ଧ କରିପାରନ୍ତି । କୌଣସି ପ୍ରଜାର ଏପ୍ରକାର ସନ୍ଧି ବିଗ୍ରହ କରିବାର ଅଧିକାର ନାହିଁ ।

କୌଣସି ଲୋକର ଅବସ୍ଥା କହିଲେ ସେହି ଲୋକର ଜୀବନରେ ଯାହା ଘଟିଥିଲା, ଘଟୁଅଛି ବା ଘଟିବ ଏହାହିଁ ବୁଝାଯାଏ । ପ୍ରତ୍ୟେକ ଲୋକପରି ସମାଜର ମଧ୍ୟ ଅବସ୍ଥା ଅଛି, ଏହି ଅବସ୍ଥା ସମାଜର କୌଣସି ବିଶେଷ ଲୋକର ନୁହେଁ, ଲୋକସମୂହର । ଏହି ଅବସ୍ଥାର ବିବରଣ ଇତିହାସରେ ଲେଖାଥାଏ । ସମାଜର ବା ଦେଶର ଅବସ୍ଥା ଦୁଇ ଭାଗରେ ବିଭକ୍ତ :—୧ ରାଜନୈତିକ, ୨ ସାମାଜିକ । ଦେଶରେ ସୁଶାସନ ଚଳାଇବା ଏବ ପ୍ରଜାମାନଙ୍କୁ ସୁଖ ଶାନ୍ତିରେ ରଖିବା ଲାଗି ରାଜା ଯେଉଁସମସ୍ତ କାର୍ଯ୍ୟ କରନ୍ତି ସେସମସ୍ତ ଦେଶର ରାଜନୈତିକ ଅବସ୍ଥାରେ ବର୍ଣ୍ଣିତ ହୁଏ । ସମାଜର ଲୋକମାନେ ପରସ୍ପରକୁ କିପରି ସାହାଯ୍ୟ ଦିଅନ୍ତି ତାହାର ବିବରଣ ଏବ ସେମାନଙ୍କର ଶାରୀରିକ, ମାନସିକ ଓ ନୈତିକ ବିବରଣମାନ ଦେଶର ସାମାଜିକ ଅବସ୍ଥାରେ ବର୍ଣ୍ଣିତ ହୁଏ ।

ସମଗ୍ର ଭାରତବର୍ଷ ଇଂରେଜ-ରାଜତ୍ୱ ପର୍ଯ୍ୟନ୍ତ ଜଣେ ରାଜାଙ୍କର ଅଧୀନ ନ ଥିଲା । ତେଣୁ ଇଂରେଜ-ରାଜତ୍ୱ ପର୍ଯ୍ୟନ୍ତ ଭାରତବର୍ଷର ଭିନ୍ନ ଅଂଶର ଲୋକମାନେ କୌଣସି ଏକ ସମାଜର ଅନ୍ତର୍ଗତ ନ ହୋଇ ଅନେକ ସମାଜର ଅନ୍ତର୍ଗତ ଥିଲେ । ସୁତରାଂ ଏ ଦେଶର

କୌଣସି ସମୟରେ ଇତିହାସ ଏକ ସମାନର ବିବରଣ ନୁହେଁ, ଅନେକ ସମାଜର । ପରଲିଖିତ ବିବରଣଗୁଡ଼ିକ ପଢ଼ିଲାବେଳେ ପାଠକମାନଙ୍କର ଏହି କଥାଟିକ ବିଶେଷରୂପେ ସ୍ମରଣ ରଖିବା ଉଚିତ ।

ହିନ୍ଦୁ-ରାଜତ୍ୱକାଳରେ ଭାରତର ଅବସ୍ଥା । ଅନେକ ବିଖ୍ୟାତ ଇତିହାସବେତ୍ତା ହିନ୍ଦୁ-ରାଜତ୍ୱକାଳକୁ ସ୍ଥୂଳତଃ ତିନି ପ୍ରଧାନ ଐତିହାସିକ ଯୁଗରେ ବିଭକ୍ତ କରିଥାନ୍ତି; ଯଥା—

୧ । ବୈଦିକ ଯୁଗ—ଏହା ଖ୍ରୀଷ୍ଟ ପୂର୍ବ ୭ମ ଶତାବ୍ଦୀ ପର୍ଯ୍ୟନ୍ତ ବିସ୍ତୃତ ।

୨ । ବୌଦ୍ଧ ଯୁଗ—ଏହା ଖ୍ରୀ: ପୂ: ୭ମ ଶତାବ୍ଦୀଠାରୁ ୬୪୮ ଖ୍ରୀ: ଅ: ରେ ରାଜା ହର୍ଷବର୍ଦ୍ଧନଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବିସ୍ତୃତ ।

୩ । ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ଯୁଗ—ଏହା ହର୍ଷବର୍ଦ୍ଧନଙ୍କ ମୃତ୍ୟୁଠାରୁ ମୁସଲମାନ-ରାଜତ୍ୱ ପର୍ଯ୍ୟନ୍ତ ବିସ୍ତୃତ ।

ଉପରଲିଖିତ ପ୍ରତ୍ୟେକ ଯୁଗରେ ଭାରତର ଅବସ୍ଥା କିପରି ଥିଲା ତାହାକୁ ଏହି ପୁସ୍ତକରେ ଦୁଇ ଭାଗରେ ବିଭକ୍ତ କରାଯାଇଅଛି; ଯଥା—(କ) ରାଜନୈତିକ ଅବସ୍ଥା, (ଖ) ସାମାଜିକ ଅବସ୍ଥା । ଏଥିପୂର୍ବରୁ ତୁମ୍ଭେମାନେ ଏହି ଦୁଇ ଅବସ୍ଥାର ବିଷୟ କେତେକ ପରିମାଣରେ ପାଠ କରିଅଛ । ପରବର୍ତ୍ତୀ ପୃଷ୍ଠାମାନଙ୍କରେ ତାହା ବିଶେଷ ଭାବରେ ବର୍ଣ୍ଣିତ ହେବ ।

---

## ବୈଦିକ ଯୁଗରେ ରାଜନୈତିକ ଅବସ୍ଥା ।

ଏହି ଯୁଗରେ ଭାରତର ରାଜନୈତିକ ଅବସ୍ଥା କିପରି ଥିଲା ତାହାର ସବିଶେଷ ବିବରଣ କୌଣସି ଇତିହାସରେ ଦିଆ ନାହିଁ । କେବଳ ଭାରତୀୟ ଆର୍ଯ୍ୟମାନଙ୍କ ରଚିତ ବେଦ, ରାମାୟଣ, ମହାଭାରତ ଏବଂ ମନୁ-

ସଂହିତା ପ୍ରଭୃତି ଗ୍ରନ୍ଥମାନଙ୍କରୁ ସେ ସମୟର ବିବରଣ ଯାହା ମିଳେ ତାହାହିଁ ତଳେ ଲେଖାଗଲା ।

ଋଗ୍‌ବେଦରୁ ଜଣାଯାଏ, ଆର୍ଯ୍ୟମାନେ ପ୍ରଥମେ ଭାରତକୁ ଆସି ସରସ୍ୱତୀ ଓ ଦୃଶଦ୍ୱତୀ ନଦୀଦ୍ୱୟର ମଧ୍ୟବର୍ତ୍ତୀ ପ୍ରଦେଶ ଅର୍ଥାତ୍ ଆଧୁନିକ ପଞ୍ଜାବରେ ବାସ କରିଥିଲେ । ଏହାକୁ ସେତେବେଳେ ବ୍ରହ୍ମାବର୍ତ୍ତ କୁହାଯାଉଥିଲା । କୁରୁକ୍ଷେତ୍ର, ପଞ୍ଚାଳ ଏବଂ ସୁରସେନ ପ୍ରଭୃତି ବହ୍ମାବର୍ତ୍ତର ପୂର୍ବକୁ ଥିବା ସ୍ଥାନମାନ ତହୁଁପରେ ଆର୍ଯ୍ୟବସତିର ସ୍ଥଳ ହେଲା, ତାହାକୁ ବ୍ରହ୍ମର୍ଷି ପ୍ରଦେଶ କୁହାଯାଉଥିଲା । ଉତ୍ତରରେ ହିମାଳୟ, ଦକ୍ଷିଣେ ବିନ୍ଧ୍ୟ ପର୍ବତ, ପୂର୍ବେ ପ୍ରୟାଗ ନଦୀ ଏବଂ ପଶ୍ଚିମେ ସରସ୍ୱତୀ, ଏହି ପ୍ରଦେଶକୁ ମଧ୍ୟଦେଶ କୁହାଯାଉଥିଲା ବୋଲି ମନୁସଂହିତାରେ ଲିଖିତ ଅଛି । ବ୍ରହ୍ମର୍ଷି ପ୍ରଦେଶ ଭିନ୍ନରୁ ମଧ୍ୟପ୍ରଦେଶରେ ଆର୍ଯ୍ୟମାନେ ବସତି ସ୍ଥାପନ କରିଥିଲେ । ଏହି ସମୟରେ ଅନ୍ୟାନ୍ୟ ସମସ୍ତ ପ୍ରଦେଶକୁ ମ୍ଲେଚ୍ଛଦେଶ ବୋଲି କୁହାଯାଉଥିଲା; ଏବଂ ତହିଁରେ ଅନେକ ଅନାର୍ଯ୍ୟ ବାସ କରୁଥିଲେ । କାଳକ୍ରମେ ସମସ୍ତ ଉତ୍ତର-ଭାରତ ଅର୍ଥାତ୍ ହିମାଳୟ ଓ ବିନ୍ଧ୍ୟ ଏହି ଦୁଇ ପର୍ବତର ମଧ୍ୟବର୍ତ୍ତୀ ସ୍ଥାନ ଆର୍ଯ୍ୟାବର୍ତ୍ତ ନାମରେ ଅଭିହିତ ହୋଇ ତହିଁରେ ଆର୍ଯ୍ୟମାନେ ବାସ କଲେ । ସେତେବେଳକୁ ମନୁସଂହିତା ତାହାର ଆଧୁନିକ ଅବୟବ ପ୍ରାପ୍ତ ହୋଇ ନ ଥିଲା, ଅର୍ଥାତ୍ ସମ୍ପୂର୍ଣ୍ଣରୂପେ ଲେଖା ସରି ନ ଥିଲା ।

ଆର୍ଯ୍ୟମାନଙ୍କର ଦାକ୍ଷିଣାତ୍ୟାଗମନ—କଥିତ ଅଛି ଆର୍ଯ୍ୟଋଷି ଅଗସ୍ତି ସର୍ବପ୍ରଥମେ ଦାକ୍ଷିଣାତ୍ୟକୁ ଆଗମନ କରିଥିଲେ । ବ୍ରାହ୍ମଣବୀର ପରଶୁରାମ ମାଲବର ଉପକୂଳରେ ବସତି ସ୍ଥାପନ କରିଥିବାର ମଧ୍ୟ ରାମାୟଣରୁ ଜଣାଯାଏ । ରାମାୟଣ ଓ ମହାଭାରତ ମଧ୍ୟରୁ ବିଶେଷତଃ ରାମାୟଣରେ ଆର୍ଯ୍ୟମାନଙ୍କର ଦାକ୍ଷିଣାତ୍ୟାଗମନର ବିଷୟ ବିଶେଷଭାବରେ ବର୍ଣ୍ଣିତ

ଅଛି । ବିଦର୍ଭ, ଯାହାକୁ ବର୍ତ୍ତମାନ ବେରାର କହନ୍ତି ତାହା ଦାକ୍ଷିଣାତ୍ୟରେ ଆର୍ଯ୍ୟମାନଙ୍କର ପ୍ରଥମ ବସତି-ସ୍ଥଳ ଥିଲା । ଦଣ୍ଡକାରଣ୍ୟ ବା ମହାରାଷ୍ଟ୍ର ପ୍ରଦେଶ ତତ୍ପରବର୍ତ୍ତୀ ଆର୍ଯ୍ୟୋପନିବେଶ ।

ବେଦପରେ ବ୍ରାହ୍ମଣ ବୋଲି ଏକ ଗ୍ରନ୍ଥ ଆର୍ଯ୍ୟମାନେ ଲେଖିଥିଲେ । ତହିଁରୁ ଜଣାପଡ଼େ ଯେ, ଆର୍ଯ୍ୟମାନେ ସରସ୍ୱତୀ ନଦୀର କୂଳରୁ ଦକ୍ଷିଣ ପୂର୍ବ ଅଞ୍ଚଳକୁ ଯାଇଥିଲେ, ଏବଂ ଅବଶେଷରେ ସମଗ୍ର ଆର୍ଯ୍ୟାବର୍ତ୍ତରେ ସେମାନେ ବସତି କରିଥିଲେ । ସେତେବେଳେ ଉତ୍ତର-ଭାରତ ଅନେକ କ୍ଷୁଦ୍ର କ୍ଷୁଦ୍ର ଉପନିବେଶ ବା ରାଜ୍ୟରେ ବିଭକ୍ତ ହୋଇଥିଲା । ସେମାନଙ୍କର ନାମ ଯଥା;—କୁରୁକ୍ଷେତ୍ର, ପଞ୍ଚାଳ, ସୁରସେନ, ମତ୍ସ୍ୟ, କୋଶଳ, କାଶୀ, ବିଦେହ, ମଗଧ, ଅଙ୍ଗ, ବଙ୍ଗ ଓ କଳିଙ୍ଗ । କୌଣସି କୌଣସି ଇତିହାସବେତ୍ତା ଏହି ରାଜ୍ୟମାନଙ୍କର ଆଧୁନିକ ନାମ ନିମ୍ନଲିଖିତରୂପେ ଯଥାକ୍ରମେ ନିର୍ଦ୍ଦେଶ କରିଅଛନ୍ତି ; ଯଥା— କର୍ଣ୍ଣାଲ, ରୋହିଲଖଣ୍ଡ, ମଥୁରା, ଜୟପୁର, ଅଯୋଧ୍ୟା, ବନାରସ, ଉତ୍ତର ବିହାର, ଦକ୍ଷିଣ ବିହାର, ପୂର୍ବ ବିହାର, ବଙ୍ଗଳା ଏବଂ ଉତ୍କଳ । ମାତ୍ର ଆଧୁନିକ ନାମବିଶିଷ୍ଟ ସ୍ଥାନମାନଙ୍କର ଆୟତନ ଯେତେ, ପୂର୍ବକାଳୀନ ରାଜ୍ୟଗୁଡିକର ଆୟତନ ଯେ ସେତିକି ଥିଲା ଏହା କେହି ଠିକ୍‌ରୂପେ କହି ପାରିବେ ନାହିଁ ।

---

## ବୈଦିକ ଯୁଗରେ ସାମାଜିକ ଅବସ୍ଥା ।

ପଞ୍ଜାବ ପ୍ରଦେଶରେ ବସତି କରିବା ସମୟରେ ଆର୍ଯ୍ୟମାନଙ୍କର ମନର ବଳ ଅତ୍ୟନ୍ତ ପ୍ରଖର ଥିଲା । ଏହି ସମୟରେ ଆର୍ଯ୍ୟଋଷିମାନଙ୍କ ମୁଖରୁ ଋଗ୍‌ବେଦ ନିଃସୃତ ହୋଇଥିଲା । ଏହି ବେଦ ଦେବଦେବୀ-ସ୍ତୋତ୍ରର ସମଷ୍ଟି । ଋଗ୍‌ବେଦ ଛଡ଼ା ସାମ, ଯଜୁଃ ଏବଂ ଅଥର୍ବ ନାମରେ ଆଉ

ଚାରିଗୋଟି ବେଦ ଅଛି । ବେଦପରେ ବ୍ରାହ୍ମଣ ରଚିତ ହୋଇଥିଲା । ବ୍ରାହ୍ମଣମାନଙ୍କରେ ବେଦର ସମାଲୋଚନା ଗଦ୍ୟରେ ଲେଖାଯାଇଛି । ବୈଦିକ କାଳରେ ଆର୍ଯ୍ୟମାନେ ଲିଖନପ୍ରଣାଳୀ ଜାଣି ନ ଥିଲେ । ସେହି ହେତୁରୁ ବେଦକୁ ଶୁଣି ଶୁଣି କଣ୍ଠସ୍ଥ କରିବାକୁ ପଡ଼ୁଥିଲା । ମାତ୍ର ସେତେବେଳେ ଆର୍ଯ୍ୟମାନଙ୍କର ସ୍ମରଣଶକ୍ତି ଏତେ ଅଧିକ ଥିଲା ଯେ ଅନେକ ହଜାର ବର୍ଷପରେ ବେଦ ଲିଖିତ ହେଲେହେଁ ତାହାର ପୂର୍ବବିଶୁଦ୍ଧତା ବିଲୁପ୍ତ ହୋଇ ନ ଥିଲା । ଶୁଣି ଶୁଣି କଣ୍ଠସ୍ଥ କରିବାକୁ ହେଉଥିଲା ବୋଲି ବେଦର ଅନ୍ୟ ନାମ ଶ୍ରୁତି ।

ଭାରତୀୟ ଆର୍ଯ୍ୟ ବା ହିନ୍ଦୁମାନେ ଆଦ୍ୟରୁ ବିଦ୍ୟାଚର୍ଚ୍ଚା କରୁଥିଲେ । ସେମାନଙ୍କର ବ୍ୟବସ୍ଥା, ଧର୍ମ, ଦର୍ଶନ, ଜ୍ୟୋତିଷ, ବ୍ୟାକରଣ ଏବଂ ଭାଷା-ତତ୍ତ୍ୱର ଗ୍ରନ୍ଥମାନ ପଢ଼ିଲେ ସେମାନଙ୍କ ବିଦ୍ୟାନୁରାଗର ବିଶେଷ ପରିଚୟ ମିଳେ । ଉପନିଷଦ୍ ସେମାନଙ୍କ ଧର୍ମର ବୈଜ୍ଞାନିକ ଆଲୋଚନା । ବେଦାଙ୍ଗମାନଙ୍କରେ ବ୍ୟବସ୍ଥା, ବ୍ୟାକରଣ, ଭାଷାତତ୍ତ୍ୱ ଏବଂ ଜ୍ୟୋତିଃ-ଶାସ୍ତ୍ରର ଆଲୋଚନା ଅଛି । କଳ୍ପସୂତ୍ରରେ ବ୍ୟବସ୍ଥାର ବିଷୟ, ପାଣିନିଙ୍କ ସୂତ୍ରାବଳୀରେ ବ୍ୟାକରଣ, ଯାସ୍କପ୍ରଣୀତ ନିରୁକ୍ତଗ୍ରନ୍ଥରେ ଭାଷାତତ୍ତ୍ୱ ବିଶେଷରୂପେ ଆଲୋଚିତ ହୋଇଅଛି । ପରାଶର ନାମକ ଏକ ଜ୍ୟୋତି-ର୍ବିଦ୍ ପଣ୍ଡିତ ଜ୍ୟୋତିଃଶାସ୍ତ୍ର ସମ୍ବନ୍ଧରେ ଗ୍ରନ୍ଥମାନ ଲେଖିଯାଇଅଛନ୍ତି ।

ହିନ୍ଦୁମାନେ ଅଙ୍କଶାସ୍ତ୍ରରେ ବିଶେଷ ଖ୍ୟାତି ଲଭିଥିଲେ । ଦଶମିକ ପଦ୍ଧତିରେ ଅଙ୍କ-ଲିଖନପ୍ରଣାଳୀ ଏମାନଙ୍କ ଦ୍ୱାରା ଉଦ୍ଭାବିତ ହୋଇଥିଲା । ପ୍ରାଚୀନ କାଳରୁ ଭାରତରେ ଜ୍ୟାମିତି ଓ ବୀଜଗଣିତର ଆଲୋଚନା ହୋଇଆସୁଅଛି । ସଙ୍ଗୀତଶାସ୍ତ୍ର ମଧ୍ୟ ହିନ୍ଦୁମାନଙ୍କ ଦ୍ୱାରା ଆଲୋଚିତ ହୋଇଥିଲା । ହିନ୍ଦୁମାନେ ଚିକିତ୍ସାବିଦ୍ୟାରେ ଅସାଧାରଣ ପାରଦର୍ଶିତା ଲାଭ କରିଥିଲେ । ଧାତୁଦ୍ରବ୍ୟ ସେବନ କରାଇ ପୀଡ଼ା ଆରୋଗ୍ୟ କରିବା

ହିନ୍ଦୁମାନଙ୍କର ଅବିଷ୍କୃତ ଅଟେ । ବସନ୍ତରୋଗ ନିବାରଣ ସକାଶେ ଟିକା ପ୍ରଦାନ କରିବା ପ୍ରଥା ମଧ୍ୟ ପୂର୍ବକାଳରୁ ଭାରତବର୍ଷରେ ପ୍ରଚଳିତ ଅଛି । ଗୋବୀଜଟିକା ବସନ୍ତ ରୋଗନିବାରକ ବୋଲି ସେମାନେ ମଧ୍ୟ ଜାଣିଥିଲେ ।

ଆର୍ଯ୍ୟମାନେ ସିନ୍ଧୁକୂଳରେ ବାସ କରୁଥିଲାବେଳେ ନାନା ସମ୍ପ୍ରଦାୟରେ ବିଭକ୍ତ ହୋଇଥିଲେ । ସେମାନେ କେତେବେଳେ ଆପଣା ମଧ୍ୟରେ, କେତେବେଳେ ଅବା ଏକତ୍ରିତ ହୋଇ ଅଦିମନିବାସୀଙ୍କ ସଙ୍ଗେ ଯୁଦ୍ଧରେ ବ୍ୟାପୃତ ହେଉଥିଲେ । ସେ ସମୟରେ ଜାତିବିଭାଗ ନ ଥିଲା । ପିତା ନିଜ ପରିବାର ନିମନ୍ତେ ପୁରୋହିତର କାର୍ଯ୍ୟ କରୁଥିଲେ । ଦଳପତି ନିଜ ଜାତିର ପୁରୋହିତ ଥିଲେ । ରମଣୀମାନେ ଅତ୍ୟନ୍ତ ସମ୍ମାନ ପାଉଥିଲେ ।

ଏହି ଯୁଗର ମଧ୍ୟଭାଗରେ ମନୁସଂହିତା ଏବଂ ରାମାୟଣ ଓ ମହାଭାରତ ନାମକ ମହାକାବ୍ୟଦ୍ୱୟ ରଚିତ ହୋଇଥିଲା । ମନୁସଂହିତାରେ ହିନ୍ଦୁମାନଙ୍କର ସମାଜିକ ଓ ରାଜନୈତିକ ବ୍ୟବସ୍ଥାମାନ ଅଛି । ବାଲ୍ମୀକି ରାମାୟଣ ଓ ବ୍ୟାସଦେବ ମହାଭାରତ ଲେଖିଥିଲେ । ଏହି ଦୁଇ ମହାକାବ୍ୟରେ ସେସମୟର ଇତିହାସ ଓ ହିନ୍ଦୁମାନଙ୍କର ସାମାଜିକ ଓ ରାଜନୈତିକ ଅବସ୍ଥା ବିସ୍ତୃତଭାବେ ବର୍ଣ୍ଣିତ ହୋଇଅଛି ।

ସାମାଜିକ ଓ ରାଜନୈତିକ ଜୀବନ:—ଋଗ୍‌ବେଦ ରଚିତ ହେବା ସମୟରେ ଆର୍ଯ୍ୟମାନଙ୍କ ମଧ୍ୟରେ ଜାତିବିଭାଗ ନ ଥିଲା । ସ୍ତ୍ରୀଲୋକମାନେ ଶିକ୍ଷାପ୍ରାପ୍ତ ହୋଇ ବିଶେଷ ମର୍ଯ୍ୟାଦା ଲଭୁଥିଲେ । ଲୋକେ ସରଳଭାବରେ ଜୀବନ ଯାପନ କରୁଥିଲେ । କୃଷି ସେମାନଙ୍କର ପ୍ରଧାନ ବ୍ୟବସାୟ ଥିଲା, ଅଉ ଗୋଜାତି ସେମାନଙ୍କର ପ୍ରଧାନ ସମ୍ପତ୍ତିରୂପେ ଗଣ୍ୟ ହେଉଥିଲା । ଋଗ୍‌ବେଦରେ କମାର, କୁମ୍ଭାର, ଅଠାଇ, ସୁନାରି, ବଢ଼ାଇ, ଭଣ୍ଡାରୀ, ତନ୍ତି, ବୈଦ୍ୟ, କବି ପ୍ରଭୃତି ବ୍ୟବସାୟୀମାନଙ୍କର ଉଲ୍ଲେଖ ଅଛି । ଆର୍ଯ୍ୟମାନେ ସୋମରସ ନାମକ ମାଦକଦ୍ରବ୍ୟ ପ୍ରସ୍ତୁତ

କରି ପାନ କରୁଥିଲେ ଏବଂ ତାହା ଦେବତାମାନଙ୍କୁ ମଧ୍ୟ ଅର୍ପଣ କରୁଥିଲେ । ଆର୍ଯ୍ୟମାନେ ଗ୍ରାମ ନିର୍ମାଣ କରି ବାସ କରୁଥିଲେ । ଆଜକାଲି ଯେପରି ନଗରମାନ ଦେଖାଯାଏ ସେପରି ନଗରମାନ ସେ ସମୟରେ ନ ଥିଲା ; କିନ୍ତୁ ପ୍ରାଚୀରବେଷ୍ଟିତ ଦୁର୍ଗମାନଙ୍କର ଅଭାବ ନ ଥିଲା । ପ୍ରତ୍ୟେକ ପରିବାରର ଗୋଟିଏ ଲେଖାଏଁ ଘର ଥିଲା; ଏବଂ ଗ୍ରାମମଧ୍ୟରେ ଅନେକଗୁଡ଼ିଏ ପରିବାର ବାସ କରୁଥିଲେ । କେତେଗୁଡ଼ିଏ ଗ୍ରାମ ମିଳି ଗୋଟିଏ ଗୋଷ୍ଠୀ ଗଠିତ ହେଉଥିଲା ; ଏବଂ ପ୍ରତ୍ୟେକ ଗୋଷ୍ଠୀ ଜଣେ ଜଣେ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ରାଜାମାନେ ସ୍ୱର୍ଣ୍ଣଭୂଷିତ ପରିଚ୍ଛଦ ଓ ଅଳଙ୍କାର ପରିଧାନ କରି ମନ୍ତ୍ରି-ବେଷ୍ଟିତ ହୋଇ ରାଜକାର୍ଯ୍ୟ ନିର୍ବାହ କରୁଥିଲେ । ନଗର ଓ ଗ୍ରାମମାନଙ୍କର ରକ୍ଷାନିମନ୍ତେ ରାଜାଙ୍କ ଅଧୀନରେ ରକ୍ଷକମାନେ ନିଯୁକ୍ତ ହେଉଥିଲେ । ଯୋଦ୍ଧାମାନେ ବର୍ମ୍ମ ଧାରଣ କରି ଧନୁର୍ବାଣହସ୍ତରେ ଯୁଦ୍ଧକୁ ଯାଉଥିଲେ । ଯୁଦ୍ଧରେ ପତାକା ବ୍ୟବହୃତ ହେଉଥିଲା । ରାଜାମାନେ ସ୍ୱୟଂ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ଥାଇ ଯୁଦ୍ଧ କରୁଥିଲେ ।

ଧର୍ମ୍ମପ୍ରଣାଳୀ :—"ଈଶ୍ୱର ଏକ", ଏହି ଭାବ ଯେ ଆର୍ଯ୍ୟମାନଙ୍କର ମନରେ ସ୍ଥାନ ପାଇଥିଲା ଏହା ଋଗ୍‌ବେଦରୁ ସ୍ପଷ୍ଟ ଜଣାଯାଏ ; କାରଣ ଋଗ୍‌ବେଦର କେତେକ ଶ୍ଳୋକ ଏକଈଶ୍ୱର ଉଦ୍ଦେଶ୍ୟରେ ଲିଖିତ ହୋଇଅଛି । ପ୍ରକୃତିର ସୁନ୍ଦର ସୁନ୍ଦର ବସ୍ତୁ, ଅରି ଇନ୍ଦ୍ର, ଅଗ୍ନି, ମରୁତ୍, ବରୁଣ, ବ୍ରହ୍ମା, ବିଷ୍ଣୁ ପ୍ରଭୃତି ଦେବମାନଙ୍କର ସ୍ତୋତ୍ର ବେଦରେ ଅଛି । ଆର୍ଯ୍ୟମାନଙ୍କର ପୂଜାପଦ୍ଧତି ଅତ୍ୟନ୍ତ ସରଳ ଥିଲା । ସ୍ତୁତି-ପାଠ ଓ ସୋମରସ-ଅର୍ପଣ ଆଉ ବଳିଦାନ ସେମାନଙ୍କ ପୂଜାର ପ୍ରଧାନ ଅଙ୍ଗ ଥିଲା, କିନ୍ତୁ ପରବର୍ତ୍ତୀ କାଳରେ ଏହି ପୂଜାର ସରଳତା କ୍ରମଶଃ ଲୁପ୍ତ ହୋଇ ତାହା ଆଡ଼ମ୍ବରରେ ପରିଣତ ହୋଇଥିଲା । ଆର୍ଯ୍ୟମାନେ ପରଲୋକରେ ସଦ୍‌ଗତି ଲାଭ କରିବା ଏବଂ ଦେବତାମାନଙ୍କର ପ୍ରୀତି ଲାଭ

କରିବା ଅଭିପ୍ରାୟରେ ନାନାପ୍ରକାର ଯଜ୍ଞ କରୁଥିଲେ । ଏହି କାଳରେ ଦୁଇପ୍ରକାରେ ଯଜ୍ଞକାର୍ଯ୍ୟମାନ ସମାହିତ ହେଉଥିଲା—ଦହି, ଦୁଧ, ଘିଅ, ପିଠା ଆହୁତି ଦେଇ ଏକପ୍ରକାରେ ଏବଂ ସୋମରସ ଆହୁତି ଦେଇ ଅନ୍ୟପ୍ରକାରେ ଯଜ୍ଞ କରାଯାଉଥିଲା । ପ୍ରଥମଶ୍ରେଣୀୟ ଯଜ୍ଞର ନାମ ହବି-ର୍ଯଜ୍ଞ ଓ ଦ୍ୱିତୀୟଶ୍ରେଣୀ ଯଜ୍ଞର ନାମ ସୋମଯଜ୍ଞ ଅଟେ ।

ଜୀବନଯାପନର ଆଦର୍ଶ :—ପୂର୍ବକାଳରେ ହିନ୍ଦୁମାନେ ସତ୍ୟପରାୟଣତା ଓ କର୍ତ୍ତବ୍ୟପରାୟଣତାକୁ ବହୁମୂଲ୍ୟ ବସ୍ତୁ ବୋଲି ଜ୍ଞାନ କରୁଥିଲେ । ସେମାନେ ଅତିଥି-ସତ୍କାରରେ ବିଶେଷ ତତ୍ପର ଥିଲେ ଏବଂ ଅଙ୍ଗୀକାର-ରକ୍ଷା ଓ ଚୁକ୍ତି-ପାଳନକୁ ବିଶେଷ ଧର୍ମ୍ମ ବୋଲି ମଣୁଥିଲେ । ଆଜିକାଲିର ଟୋଲପଦ୍ଧତି ଅନୁସାରେ ଛାତ୍ରମାନଙ୍କୁ ଅତ୍ୟନ୍ତ ଯତ୍ନସହ ଶିକ୍ଷା ଦିଆ-ଯାଉଥିଲା । ଲୋକେ ସରଳ, ସତ୍ୟବାଦୀ ଓ ନିୟମାବଦ୍ଧ ଥିଲେ । ବ୍ରାହ୍ମଣର ସମସ୍ତ ଜୀବନ କଠୋର ନିୟମାବଦ୍ଧ ଥିଲା । କଲ୍ପସୂତ୍ର ଅନୁ-ସାରେ ବ୍ରାହ୍ମଣଜୀବନ ଚାରିଭାଗରେ ବିଭକ୍ତ ଥିଲା—୧ ବ୍ରହ୍ମଚର୍ଯ୍ୟ, ୨ ଗାର୍ହସ୍ଥ୍ୟ, ୩ ବାନପ୍ରସ୍ଥ ଓ ୪ ଯତିବ୍ରତ । ବ୍ରହ୍ମଚର୍ଯ୍ୟାବସ୍ଥାରେ ବ୍ରାହ୍ମଣ-ମାନେ ସଂସାରର ସୁଖଭୋଗରୁ ବିରତ ହୋଇ କଠୋର ନିୟମମାନ ପାଳନ କରି ଗୁରୁପାଖରୁ ଶିକ୍ଷା ପ୍ରାପ୍ତ ହେଉଥିଲେ । ଦ୍ୱିତୀୟାବସ୍ଥାରେ ସେମାନେ ବିବାହ କରୁଥିଲେ ; କିନ୍ତୁ ସଂସାରର ଆମୋଦ ପ୍ରମୋଦରେ ରତ ହେଉ ନ ଥିଲେ ; ସେମାନେ ଧର୍ମ୍ମକାର୍ଯ୍ୟ ଓ ବେଦପାଠରେ ସମୟ କଟାଉଥିଲେ । ତୃତୀୟାବସ୍ଥାରେ ସେମାନେ ସଂସାର ପରିତ୍ୟାଗ କରି ବନକୁ ଗମନ କରୁଥିଲେ ଏବଂ ସେଠାରେ ଫଳମୂଳ ଖାଇ ଅତ୍ୟନ୍ତ କଷ୍ଟ ସ୍ୱୀକାର କରି ଧର୍ମ୍ମସାଧନ କରୁଥିଲେ । ଶେଷାବସ୍ଥାରେ ସେମାନେ ଧର୍ମ୍ମଚିନ୍ତା ଓ ତପସ୍ୟାରେ ମଗ୍ନ ହେଉଥିଲେ ।

ଜାତିବିଭାଗ :—ମନୁସଂହିତା ଯେଉଁ ସମୟରେ ଲେଖାଯାଇଥିଲା ସେ ସମୟକୁ ହିନ୍ଦୁମାନଙ୍କ ମଧ୍ୟରେ ଜାତିବିଭାଗ ପ୍ରଚଳିତ ହୋଇଥିଲା ।

ମହାକାବ୍ୟଦ୍ୱୟ ଯେଉଁ ସମୟରେ ପ୍ରଣୀତ ହୋଇଥିଲା, ସେହି ସମୟରେ ହିନ୍ଦୁମାନଙ୍କର ସାମାଜିକ ଅବସ୍ଥାରେ ବିଶେଷ ପରିବର୍ତ୍ତନ ଘଟିଥିଲା । ହିନ୍ଦୁମାନଙ୍କର ବଂଶବୃଦ୍ଧି ହେବା ସଙ୍ଗେ ସଙ୍ଗେ ବ୍ୟବସାୟିକ ବିଭାଗ ଆରମ୍ଭ ହୋଇଥିଲା । ଏହି ବ୍ୟବସାୟିବିଭାଗରୁ ଜାତିବିଭାଗର ସୃଷ୍ଟି । ସର୍ବପ୍ରଥମେ ଭାରତବାସିମାନଙ୍କ ମଧ୍ୟରେ ଦୁଇଗୋଟି ବିଭାଗ ଥିଲା । ଯଥା—ଆର୍ଯ୍ୟ ଓ ଅନାର୍ଯ୍ୟ । କ୍ରମେ ଏହି ଦୁଇ ବିଭାଗ ଚାରିବିଭାଗରେ ପରିଣତ ହୋଇଥିଲା, ଯଥା—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର । ଯେଉଁ ଆର୍ଯ୍ୟମାନଙ୍କର ମାନସିକ ବୃତ୍ତି ଅତ୍ୟନ୍ତ ପ୍ରଖର ଥିଲା ଏବଂ ଯେଉଁମାନେ ବେଦ ଓ ସ୍ତୋତ୍ରମାନ କଣ୍ଠସ୍ଥ କରିପାରୁଥିଲେ ସେମାନେ ଧର୍ମକାର୍ଯ୍ୟରେ ନିଯୁକ୍ତ ହେଲେ ଏବଂ ସେମାନଙ୍କୁ ବ୍ରାହ୍ମଣ ବୋଲାଗଲା । ଯେଉଁ ଆର୍ଯ୍ୟମାନେ ବଳବାନ୍ ଏବଂ ଅସ୍ତ୍ରଶସ୍ତ୍ର-ଚାଳନାରେ ନିପୁଣ ହୋଇ ଯୁଦ୍ଧକାର୍ଯ୍ୟରେ ନିଯୁକ୍ତ ହେଲେ, ସେମାନେ କ୍ଷତ୍ରିୟ ବୋଲାଇଲେ । ଅନ୍ୟାନ୍ୟ ଯେଉଁ ଆର୍ଯ୍ୟମାନେ କୃଷିବାଣିଜ୍ୟରେ ପ୍ରବୃତ୍ତ ହୋଇଥିଲେ ସେମାନଙ୍କୁ ବୈଶ୍ୟ କୁହାଗଲା । ଯେଉଁ ଅନାର୍ଯ୍ୟମାନେ ଆର୍ଯ୍ୟମାନଙ୍କର ବଶ୍ୟତା ସ୍ୱୀକାର କଲେ ସେମାନଙ୍କୁ ଶୂଦ୍ର କୁହାଗଲା । ଏହି ଚାରି ଜାତି-ମଧ୍ୟରେ ବ୍ରାହ୍ମଣମାନେ ଶୀଘ୍ର ଶ୍ରେଷ୍ଠତ୍ୱ ଲାଭ କଲେ ଏବଂ ସେମାନେ ଧର୍ମ, ବ୍ୟବସ୍ଥା ଓ ଶାସନ କାର୍ଯ୍ୟରେ କ୍ଷତ୍ରିୟମାନଙ୍କୁ ପରାମର୍ଶ ଦେଲେ । କ୍ଷତ୍ରିୟମାନେ ଦ୍ୱିତୀୟ ସ୍ଥାନ ଅଧିକାର କରି ଦେଶରକ୍ଷା ଓ ଦେଶଶାସନର ଭାର ଗ୍ରହଣ କଲେ । ଶୂଦ୍ରମାନେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର ସେବା କରି ଜୀବନଧାରଣ କଲେ । ପ୍ରଥମେ ଜାତିବିଭାଗ ବ୍ୟକ୍ତିଗତ ଥିଲା । ପଛକୁ ପୁରୁଷାନୁକ୍ରମିକ ହୋଇ ଭିନ୍ନ ଭିନ୍ନ ପରିବାର-ଗତ ହେଲା ।

ଅଶ୍ୱମେଧ ଯଜ୍ଞ ।—ଏହି ଯଜ୍ଞକୁ ରାଜଚକ୍ରବର୍ତ୍ତୀ ଛଡ଼ା ଆଉ କାହାର କରିବାର ଅଧିକାର ନ ଥିଲା । ଅଶ୍ୱ ଏହି ଯଜ୍ଞର ପ୍ରଧାନ ପଶୁ ।

ବେଦ-ମନ୍ତ୍ରରେ ଗୋଟିଏ ଅଶ୍ୱକୁ ସଂସ୍କାର କରି ଯଥେଚ୍ଛାକ୍ରମେ ସକାଶେ ଛାଡ଼ିଦିଆଯାଉଥିଲା । ଅଶ୍ୱରକ୍ଷା ସକାଶେ ରାଜପୁତ୍ରମାନେ ସସୈନ୍ୟରେ ତାହାର ଅନୁଗମନ କରୁଥିଲେ । ପରରାଜ୍ୟର ଅଧିପତି ଅଶ୍ୱକୁ ଧରି ରଖିଲେ ରକ୍ଷକମାନେ ତାହାଙ୍କୁ ଯୁଦ୍ଧରେ ପରାସ୍ତ କରି ଅଶ୍ୱକୁ ଉଦ୍ଧାର କରୁଥିଲେ । ରାଜପୁତ୍ରମାନେ ଅଶ୍ୱକୁ ନାନା ସ୍ଥାନରେ ବୁଲାଇ ପୁଣି ଯଜ୍ଞସ୍ଥଳକୁ ଘେନିଆସୁଥିଲେ । ଅଶ୍ୱ ଫେରିଆସିଲେ ତାହାକୁ ପ୍ରୋକ୍ଷଣ କରି ହୋମକାର୍ଯ୍ୟ ସମାପନ କରାଯାଉଥିଲା । ପ୍ରବଳ ପରାକ୍ରାନ୍ତ ରାଜାଧିରାଜ ବ୍ୟତୀତ ଅଉ କେହି ଏହି ଯଜ୍ଞ କରିପାରୁ ନ ଥିଲେ ।

ରାଜସୂୟ ଯଜ୍ଞ ।—ଗୁଣବାନ୍ ଓ ଧନବାନ କ୍ଷତ୍ରିୟରାଜା ବ୍ୟତୀତ ଅନ୍ୟ କେହି ରାଜସୂୟଯଜ୍ଞ କରିପାରୁ ନ ଥିଲେ । ପ୍ରାଚୀନକାଳରେ ରାଜାମାନେ ଏହି ଯଜ୍ଞ କରି ରାଜଚକ୍ରବର୍ତ୍ତୀ-ଉପାଧି ଧାରଣ କରୁଥିଲେ । ଅଭିଷେକଉତ୍ତାରୁ ରାଜାଙ୍କର କୌଣସି ଶତ୍ରୁ ଥିଲେ ସେ ତାହାଙ୍କ ରାଜ୍ୟକୁ ସସୈନ୍ୟରେ ଗମନ କରୁଥିଲେ; ଏବଂ ଯୁଦ୍ଧରେ ଶତ୍ରୁ ଜୟ କରି ମହା-ସମାରୋହରେ ନିଜ ରାଜଧାନୀକୁ ଫେରିଆସୁଥିଲେ । ଏହି ଯଜ୍ଞରେ ବିଜିତ ରାଜାମାନଙ୍କୁ ଅଧୀନତା-ସୂଚକ କୌଣସି ନା କୌଣସି କାର୍ଯ୍ୟ କରିବାକୁ ହେଉଥିଲା ।

---

## ବୌଦ୍ଧ ଯୁଗରେ ରାଜନୈତିକ ଅବସ୍ଥା ।

ପୂର୍ବ ଗଳ୍ପରେ କୁହାଯାଇଅଛି, ଯେ ଖ୍ରୀଷ୍ଟୀୟ ଷଷ୍ଠଶତାବ୍ଦୀ ପୂର୍ବେ ଭାରତବର୍ଷ କପରି ଶାସିତ ହେଉଥିଲା, ତାହାର ଐତିହାସିକ ବିବରଣ ନାହିଁ । ଖ୍ରୀ: ପୂ: ଷଷ୍ଠଶତାବ୍ଦୀ ପରେ ମଧ୍ୟ ଏ ଦେଶରେ ଲିଖିତ କୌଣସି ବିଶ୍ୱାସଯୋଗ୍ୟ ଇତିହାସ ନାହିଁ; ତଥାପି ବୌଦ୍ଧଧର୍ମଗ୍ରନ୍ଥ, ପାରସ୍ୟ-

ଦେଶୀୟ ଇତିହାସ, ଗ୍ରୀକମାନଙ୍କ ଲିଖିତ ବିବରଣରୁ ଏ ସମୟରେ ଭାରତର ଅବସ୍ଥା ସମ୍ବନ୍ଧେ ଯାହା ମିଳେ ତାହା ତଳେ ଲେଖାଗଲା ।

## ମଗଧ ସାମ୍ରାଜ୍ୟ ।

ଅଧୁନା ଭାରତର ଯେଉଁ ପ୍ରଦେଶ ଦକ୍ଷିଣ ବିହାର ନାମରେ ଅଭିହିତ ତାହାର ପୁରାତନ ନାମ ମଗଧ । ଏହାର ପୁରାତନ ଇତିହାସ ମିଳେ ନାହିଁ । ମାତ୍ର ଜଣାଯାଏ ଯେ ଖ୍ରୀ: ପୂ: ଷଷ୍ଠଶତାବ୍ଦୀରେ ମଗଧରେ ଶିଶୁନାଗ କର୍ତ୍ତୃକ ସ୍ଥାପିତ ଏକ ରାଜବଂଶ ରାଜତ୍ୱ କରୁଥିଲେ । ସେମାନଙ୍କର ରାଜଧାନୀ ରାଜଗୃହ ଥିଲା । ବିମ୍ବିସାର ଓ ତାଙ୍କର ପୁତ୍ର ଅଜାତଶତ୍ରୁ ଏହି ବଂଶର ରାଜା ଥିଲେ । ଏହି ଦୁଇ ରାଜାଙ୍କ ଅମଳରେ ବୁଦ୍ଧଦେବ ମଗଧରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ଖ୍ରୀ: ପୂ: ଷଷ୍ଠଶତାବ୍ଦୀର ଶେଷଭାଗରେ ପାରସ୍ୟର ରାଜା ଡେରାୟୁସ୍ ଏହି ରାଜ୍ୟ ଆକ୍ରମଣ କରିଥିଲେ ।

ନନ୍ଦବଂଶ:—ଶିଶୁନାଗବଂଶପରେ ନନ୍ଦବଂଶ ମଗଧରେ ରାଜତ୍ୱ କରୁଥିଲେ, (ଖ୍ରୀ: ପୂ: ୪ର୍ଥ ଶତାବ୍ଦୀ) । ଏମାନଙ୍କ ରାଜଧାନୀ ପାଟଳୀପୁତ୍ର ବା ଅଧୁନିକ ପାଟନାନଗର ଥିଲା । ମହାନନ୍ଦ ଏହି ବଂଶର ଶେଷ ରାଜା । ଏହାଙ୍କ ସମୟରେ ଗ୍ରୀକ୍-ବୀର ଅଲେକଜାଣ୍ଡର ଭାରତ ଆକ୍ରମଣ କରିଥିଲେ । (ଖ୍ରୀ: ପୂ: ୩୨୭) ।

ମୌର୍ଯ୍ୟବଂଶ:—ନନ୍ଦବଂଶଅନ୍ତେ ମୌର୍ଯ୍ୟବଂଶ ମଗଧରେ ରାଜପଣ କରିଥିଲେ । ଚନ୍ଦ୍ରଗୁପ୍ତ ଏହି ବଂଶର ସ୍ଥାପୟିତା । ସେ ଅତି ପରାକ୍ରମୀ ହୋଇ ସମସ୍ତ ଉତ୍ତର-ଭାରତବର୍ଷରେ ନିଜ ରାଜ୍ୟ ବିସ୍ତାର କରିଥିଲେ । ତୁମ୍ଭେମାନେ ଆଗରୁ ପାଠ କରିଅଛ, ଅଲେକଜାଣ୍ଡରଙ୍କ ମୃତ୍ୟୁପରେ ତାଙ୍କ ରାଜ୍ୟ ତାହାଙ୍କ ସେନାପତିମାନଙ୍କ ମଧ୍ୟରେ ବିଭକ୍ତ ହୋଇଥିଲା । ସିଲିଉକସ୍ ନାମକ ଏକ ସେନାପତି ଏସିଆଖଣ୍ଡର ରାଜ୍ୟ ପାଇଥିଲେ । ସେ



ବୁଦ୍ଧଦେବ ।

ବକ୍ତ୍ରିୟାରେ ଗୋଟିଏ ସାମ୍ରାଜ୍ୟ ସ୍ଥାପନ କରିଥିଲେ, ଏବଂ ତାହାଙ୍କୁ ସେ ଏହି ସମୟରେ ଭାରତ ଅଡ଼କୁ ବିସ୍ତାର କରିବାର ଚେଷ୍ଟା କରୁଥିଲେ ; କିନ୍ତୁ

ଶେଷ ଚନ୍ଦ୍ରଗୁପ୍ତଙ୍କ ଦ୍ୱାରା ପରାଜିତ ହୋଇ ପଞ୍ଜାବ ପ୍ରଦେଶ ହରାଇଲେ । ସିଲ୍ଉକସ୍ ଚନ୍ଦ୍ରଗୁପ୍ତଙ୍କ ସଙ୍ଗେ ସନ୍ଧି ସ୍ଥାପନ କରି ତାଙ୍କ ସଭାରେ ମେଗାସ୍ଥିନିସ୍ ନାମକ ଏକ ଦୂତ ରଖିଥିଲେ । ଚନ୍ଦ୍ରଗୁପ୍ତଙ୍କ ଅନ୍ତେ ଅଶୋକ ମଗଧର ରାଜା ହେଲେ । ଏହାଙ୍କ ଅମଳରେ ବୌଦ୍ଧଧର୍ମ ଭାରତରେ ସର୍ବତ୍ର ପ୍ରଚାରିତ ହେଲା । ଏହାଙ୍କ ରାଜ୍ୟ ସମସ୍ତ ଉତ୍ତର-ଭାରତବର୍ଷ ଅଉ ଦାକ୍ଷିଣାତ୍ୟର ଅନେକ ଅଂଶରେ ବିସ୍ତୃତ ଥିଲା ।

ଭାରତରେ ବକ୍ଟ୍ରିୟାର ଗ୍ରୀକ୍ :—ଅଶୋକଙ୍କ ଅନ୍ତେ ଛଅ ସାତ ଜଣ ରାଜା ମଗଧରେ ରାଜତ୍ୱ କରିଥିଲେ । ଏମାନେ ଅତ୍ୟନ୍ତ ଦୁର୍ବଳ ଥିବାରୁ ବକ୍ଟ୍ରିୟାର ଗ୍ରୀକ୍‌ମାନେ ଭାରତକୁ ଆସି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସ୍ଥାପନ କରିଥିଲେ । କିନ୍ତୁ ଏହି ସମୟରେ ମଗଧରେ ପୁଷ୍ପମିତ୍ର ନାମକ ଏକ ରାଜା ପରାକ୍ରମୀ ହୋଇ ଏମାନଙ୍କର ରାଜ୍ୟବିସ୍ତାରରେ ବାଧା ଦେଇଥିଲେ ।

ମିତ୍ର-ବଂଶ ଓ କାନ୍ୱ-ବଂଶ :—ପୁଷ୍ପମିତ୍ର ମୌର୍ଯ୍ୟବଂଶର ଶେଷ ରାଜାଙ୍କୁ ହତ୍ୟାକରି ମଗଧରେ ମିତ୍ରବଂଶ ସ୍ଥାପନ କଲେ । ଏମାନେ ୧୧୨ ବର୍ଷ ରାଜତ୍ୱ କଲାପରେ କାନ୍ୱବଂଶ ମଗଧରେ ରାଜତ୍ୱ କଲେ । ଏମାନେ ୪୫ ବର୍ଷ ରାଜତ୍ୱ କଲାପରେ ଅନ୍ଧ୍ରବଂଶ ମଗଧ ଅଧିକାର କରିନେଲେ ।

ଅନ୍ଧ୍ର-ବଂଶ :—ଅନ୍ଧ୍ରବଂଶ ଦାକ୍ଷିଣାତ୍ୟର ମହାରାଷ୍ଟ୍ର ପ୍ରଦେଶରେ ରାଜତ୍ୱ କରୁଥିଲେ । ଦାକ୍ଷିଣାତ୍ୟରେ ମଧ୍ୟ ଉତ୍ତର-ଭାରତବର୍ଷପରି ଅନେକ ରାଜ୍ୟ ଥିଲା । ଦାକ୍ଷିଣାତ୍ୟର ଦକ୍ଷିଣ ଭାଗରେ ଅତି ପୁରାକାଳରୁ ଚେର, ଚୋଳ ଏବଂ ପାଣ୍ଡ୍ୟ ନାମକ ତିନିଗୋଟି ରାଜ୍ୟ ଥିଲା । ଚେର ଓ ଚୋଳ ଯଥାକ୍ରମେ ପଶ୍ଚିମ ଓ ପୂର୍ବ ପାଖର ସମୁଦ୍ରକୂଳରେ, ଅଉ ପାଣ୍ଡ୍ୟ ଏ ଦୁହିଙ୍କର ମଧ୍ୟଭାଗରେ ଥିଲା । ତହିଁପରେ ପଲ୍ଲବନାମକ ଏକ ରାଜ୍ୟ ଦାକ୍ଷିଣାତ୍ୟରେ ପରାକ୍ରମଶାଳୀ ହୋଇଥିଲା । ଏହାର ରାଜଧାନୀ କାଞ୍ଚି ଥିଲା । ଖ୍ରୀ: ପୂ: ୨ୟ ଶତାବ୍ଦୀର ପ୍ରଥମ ଭାଗରେ ମହାରାଷ୍ଟ୍ର ପ୍ରଦେଶରେ ଅନ୍ଧ୍ରମାନେ ଅତ୍ୟନ୍ତ ପରାକ୍ରମୀ ହୋଇ ଦାକ୍ଷିଣାତ୍ୟରେ ଏକ ସାମ୍ରାଜ୍ୟ

ସ୍ଥାପନ କରିଥିଲେ । ଏମାନେ ଉତ୍ତର-ଭାରତ ଅଞ୍ଚଳ ରାଜ୍ୟ ବିସ୍ତାର କରି ମଗଧର କାନ୍ୱବଂଶକୁ ତଡ଼ିଦେଇ ମଗଧ ଅଧିକାର କରିଥିଲେ । (୨୭ ଖ୍ରୀ: ପୂ:) ।

ସିଥୀୟ ବା ଶକ :—ଯେତେବେଳେ ଅନ୍ଧ୍ରମାନେ ଉତ୍ତର-ଭାରତ-ବର୍ଷରେ ପ୍ରଭୁତ୍ୱ ଜାହିର କରୁଥିଲେ, ସେତେବେଳେ ପଶ୍ଚିମପାଖ ସିଥୀୟ-ମାନଙ୍କ ଦ୍ୱାରା ଶାସିତ ହେଉଥିଲା । ସିଥୀୟମାନେ ମଧ୍ୟଏସିଆର ଲୋକ । ସେତେବେଳେ ହିନ୍ଦୁମାନେ ମଧ୍ୟଏସିଆକୁ ଶକଦ୍ୱୀପ କହୁଥିଲେ । ସେମାନେ ବାକ୍ଟ୍ରିୟାରାଜ୍ୟ ଧ୍ୱଂସ କରି ଭାରତକୁ ଆସିଥିଲେ ଏବଂ ନାନା-ସ୍ଥାନରେ ଗୋଟିଏ ଗୋଟିଏ ରାଜ୍ୟ ସ୍ଥାପନ କରି ବାସ କରୁଥିଲେ । ସେମାନେ ଅତ୍ୟନ୍ତ ପରାକ୍ରମୀ ହୋଇ ମହାରାଷ୍ଟ୍ରଦେଶ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । କନିଷ୍କ ଶକରାଜାମାନଙ୍କ ମଧ୍ୟରେ ପ୍ରଧାନ ଥିଲେ । ତାହାଙ୍କର ରାଜଧାନୀ ପେଶୱାର ଥିଲା । ସେ ୭୮ ଖ୍ରୀ: ଅବ୍ଦରେ ସିଂହାସନରେ ବସିବା ଦିନଠାରୁ ଶକାବ୍ଦ ଆରମ୍ଭ ହେଲା । ଏହାଙ୍କ ରାଜ୍ୟ ଅଫଗାନସ୍ଥାନଠାରୁ ଭାରତରେ ମଥୁରା ପର୍ଯ୍ୟନ୍ତ ବିସ୍ତୃତି ହୋଇ-ଥିଲା, ଏବଂ ଏ ବୌଦ୍ଧଧର୍ମାବଲମ୍ବୀ ଥିଲେ ।

ଗୁପ୍ତ ସାମ୍ରାଜ୍ୟ :—ଅନ୍ଧ୍ରମାନେ ପ୍ରାୟ ୩୦୦ ବର୍ଷ ପର୍ଯ୍ୟନ୍ତ ନିଜ ପ୍ରାଧାନ୍ୟ ଅକ୍ଷୁଣ୍ଣଭାବରେ ରଖିଥିଲେ ଏବଂ ଅନେକ ସମୟରେ ସିଥୀୟମାନଙ୍କ ସଙ୍ଗେ ଯୁଦ୍ଧରେ ବ୍ୟାପୃତ ହେଉଥିଲେ । ଅବଶେଷରେ ସେମାନଙ୍କର କ୍ଷମତା ହ୍ରାସ ଲଭି ତୃତୀୟ ଶତାବ୍ଦୀର ଆରମ୍ଭରେ ଉତ୍ତର ଓ ଦକ୍ଷିଣ ଭାରତରୁ ବିଲୁପ୍ତ ହୋଇଥିଲା । ଏହି ଶତାବ୍ଦୀର ଶେଷଭାଗରେ ଗୁପ୍ତବଂଶ କ୍ଷମତାଶାଳୀ ହେଲା । ଗୁପ୍ତନାମକ ଏକ ବ୍ୟକ୍ତି ଏହି ବଂଶର ସ୍ଥାପୟିତା । ସେ ଏକ ସାମାନ୍ୟ ରାଜାଙ୍କର କରଦ ରାଜା ଥିଲେ । ଏହି ବଂଶ ଚନ୍ଦ୍ରଗୁପ୍ତଙ୍କ ସମୟରେ

ଅତ୍ୟନ୍ତ ପରାକ୍ରମଶାଳୀ ହୋଇଥିଲା, (୩୧୯) । ସମୁଦ୍ରଗୁପ୍ତ ଏହି ବଂଶର ପ୍ରଧାନ ରାଜା । ଉତ୍ତର ଓ ଦକ୍ଷିଣ ଭାରତର ଅନେକ ରାଜା ଏହାଙ୍କର ବଶ୍ୟତା ସ୍ୱୀକାର କରିଥିଲେ । ପାଟଳୀପୁତ୍ର ଗୁପ୍ତସାମ୍ରାଜ୍ୟର ରାଜଧାନୀ ଥିଲା ।

## ହୁନ୍‌ମାନଙ୍କ ଆକ୍ରମଣ ।

ପଞ୍ଚମ ଶତାବ୍ଦୀର ଶେଷଭାଗରେ ଗୁପ୍ତବଂଶର କ୍ଷମତା ହ୍ରାସ ଲଭିଲା ଏହି ସମୟରେ ମଧ୍ୟଏସିଆରୁ ହୁନ୍ ନାମକ ଆଉ ଏକ ଶକ୍ତଜାତି ଭାରତକୁ ଆସିଥିଲେ । ଏମାନଙ୍କର ଏକ ସର୍ଦ୍ଦାର ତୋରମାନ ପଞ୍ଜାବ ଅଧିକାର କରି ତହିଁରେ ରାଜ୍ୟ ସ୍ଥାପନ କରିଥିଲେ । ତୋରମାନଙ୍କ ପୁତ୍ର ମିହିରକୁଳ ଅତ୍ୟନ୍ତ ପରାକ୍ରମୀ ହୋଇ ଗୁପ୍ତମାନଙ୍କୁ ପରାସ୍ତ କରିଥିଲେ, କିନ୍ତୁ ନିଜେ ଯଶୋଧର୍ମ୍ମଦେବ ବା ବିକ୍ରମାଦିତ୍ୟଙ୍କ ଦ୍ୱାରା ପରାଜିତ ହୋଇ କାଶ୍ମୀରକୁ ପଳାଇଯାଇଥିଲେ ଏବଂ ହୁନ୍‌ମାନଙ୍କର କ୍ଷମତା ବିଚୂର୍ଣ୍ଣ ହୋଇଥିଲା ।

ଯଶୋଧର୍ମ୍ମଦେବ ବା ବିକ୍ରମାଦିତ୍ୟ:—ଯଶୋଧର୍ମ୍ମଦେବ ମାଳବର ରାଜା ଥିଲେ । ସେ ମିହିରକୁଳଙ୍କୁ ପରାସ୍ତ କରି ଅତ୍ୟନ୍ତ ପରାକ୍ରମୀ ହୋଇଥିଲେ । ତତ୍ପରେ ସେ କ୍ରମଶଃ ରାଜ୍ୟ ବିସ୍ତାର କରି ସମସ୍ତ ଉତ୍ତରଭାରତରେ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ଉଜ୍ଜୟିନୀ ତାହାଙ୍କ ରାଜଧାନୀ ଥିଲା । ସେ ଖ୍ରୀ: ପୂ: ୫୭ ଅବ୍ଦରେ ବିକ୍ରମସମ୍ବତ୍ ନାମକ ଏକ ଅବ୍ଦ ପ୍ରଚଳନ କରିଥିଲେ । ସେ ଶକମାନଙ୍କୁ ପରାସ୍ତ କରିଥିବାରୁ ଶକାରି-ଉପାଧି ପ୍ରାପ୍ତ ହୋଇଥିଲେ । ତାହାଙ୍କ ଅନ୍ତେ ତାହାଙ୍କ ବଂଶଧରମାନେ ଅତ୍ୟନ୍ତ ଦୁର୍ବଳ ହେବାରୁ ସେମାନଙ୍କ ଅଧୀନସ୍ଥ ଅନେକଗୁଡ଼ିଏ ରାଜ୍ୟ ସ୍ୱାଧୀନ ହୋଇଥିଲା ।

ଉତ୍ତର-ଭାରତର ଶେଷ ହିନ୍ଦୁ ସମ୍ରାଟ୍ ହର୍ଷବର୍ଦ୍ଧନ:—ଉପରୋକ୍ତ

ସ୍ୱାଧୀନ ରାଜ୍ୟମାନଙ୍କ ମଧ୍ୟରେ ଥାନେଶ୍ୱର ଏକତମ । ହର୍ଷବର୍ଦ୍ଧନଙ୍କ ସମୟରେ ଏହା ଅତ୍ୟନ୍ତ ପରାକ୍ରମଶାଳୀ ହୋଇଥିଲା । ହର୍ଷବର୍ଦ୍ଧନ ଥାନେଶ୍ୱରଠାରୁ କନୌଜକୁ ନିଜ ରାଜଧାନୀ ଉଠାଇନେଇଥିଲେ । ସେ ବୌଦ୍ଧଧର୍ମାବଲମ୍ବୀ ଥିଲେ । ତାହାଙ୍କ ସମୟରେ ଚୀନପରିବ୍ରାଜକ ହୁୟେନ୍‌ସାଂ ଭାରତକୁ ଆସିଥିଲେ । ହର୍ଷବର୍ଦ୍ଧନଙ୍କ ସାମ୍ରାଜ୍ୟ କାଶ୍ମୀରଠାରୁ ଆସାମ ପର୍ଯ୍ୟନ୍ତ, ଆଉ ନେପାଳଠାରୁ ନର୍ମ୍ମଦା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେ ଦାକ୍ଷିଣାତ୍ୟରେ ନିଜ ପ୍ରାଧାନ୍ୟ ସ୍ଥାପନ କରିବାଲାଗି ଚେଷ୍ଟା କରିଥିଲେ । କିନ୍ତୁ ଚାଲୁକ୍ୟମାନେ ତହିଁରେ ବାଧା ଦେଇଥିଲେ ।

ଦାକ୍ଷିଣାତ୍ୟରେ ଚାଲୁକ୍ୟ-ସାମ୍ରାଜ୍ୟ :—ଚାଲୁକ୍ୟମାନେ କ୍ଷତ୍ରିୟ ଜାତି ଅଟନ୍ତି । ଲୋକେ କହନ୍ତି ସେମାନେ ଅଯୋଧ୍ୟାରୁ ଦାକ୍ଷିଣାତ୍ୟକୁ ଯାଇ-ଥିଲେ । ଷଷ୍ଠଶତାବ୍ଦୀର ଆରମ୍ଭରେ ଅର୍ଥାତ୍ ଅନ୍ଧ୍ରବଂଶଧ୍ୱଂସର ୩୦୦ ବର୍ଷପରେ ସେମାନେ ଦାକ୍ଷିଣାତ୍ୟରେ ମହାରାଷ୍ଟ୍ରଦେଶୀୟ ରାଜାମାନଙ୍କୁ ଦମନ କରି ଏକ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ଏହି ଶେଷୋକ୍ତ ରାଜା-ମାନେ ରାଷ୍ଟ୍ରକୂଟ ବା ରାଠୋରବଂଶର ଲୋକ । ଏମାନେ ଅନ୍ଧ୍ରବଂଶର ପତନରେ ସ୍ୱାଧୀନ ହୋଇଥିଲେ । ଜୟସିଂହ ଚାଲୁକ୍ୟବଂଶର ପ୍ରଥମ ରାଜା ଥିଲେ । ଜୟସିଂହଙ୍କ ନାତି ୧ମ ପୁଲକେଶୀ ଅଶ୍ୱମେଧଯଜ୍ଞ କରିଥିଲେ । ତାହାଙ୍କର ନାତି ଦ୍ୱିତୀୟ ପୁଲକେଶୀ ହର୍ଷବର୍ଦ୍ଧନଙ୍କର ଆକ୍ରମଣରେ ବାଧା ଦେଇଥିଲେ ଏବଂ ସେ ଏହି ବଂଶର ସର୍ବପ୍ରଧାନ ନରପତି ଥିଲେ ।

---

## ବୌଦ୍ଧ ଯୁଗରେ ସାମାଜିକ ଅବସ୍ଥା ।

ଆଦିମବାସିଙ୍କ ସଙ୍ଗେ ଯୁଦ୍ଧକାର୍ଯ୍ୟ ଶେଷ ହେବାରୁ ଏବଂ ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଧାନ୍ୟଲାଭର ଇଚ୍ଛା କ୍ରମେ ହ୍ରାସ ହେବାରୁ ଏହି

ସମୟରେ ପ୍ରଜାମାନେ ଏକ ଏକ ପରାକ୍ରମଶାଳୀ ରାଜାଙ୍କ ଅଧୀନ ରହି ଶାନ୍ତି ଭୋଗ କରୁଥିଲେ । ଏହି ଯୁଗର ପ୍ରଥମ ଭାଗରେ ଦର୍ଶନଶାସ୍ତ୍ରର ବିଶେଷ ଉନ୍ନତି ହୋଇଥିଲା, ଏବଂ ବୌଦ୍ଧ ଓ ଜୈନଧର୍ମର ଆବିର୍ଭାବ ହୋଇଥିଲା ।

ଦର୍ଶନଶାସ୍ତ୍ର :—ବୈଦିକ କାଳରୁ ଭାରତରେ ଦର୍ଶନଶାସ୍ତ୍ରର ଆଲୋଚନା ଆରମ୍ଭ ହୋଇଥିଲା । ଉପନିଷଦକୁ ଜଗତର ଆଦି ଦର୍ଶନଶାସ୍ତ୍ର ବୋଲାଯାଇପାରେ, ମାତ୍ର ତହିଁରେ ଦର୍ଶନଶାସ୍ତ୍ରର ବିଷୟମାନ ଆଖ୍ୟାୟିକାରୂପରେ କହିତ ଅଛି । ଏଥିଉତ୍ତାରୁ ମହାକାବ୍ୟଦ୍ୱୟ ରଚିତହେବା ସମୟରେହିଁ ପ୍ରକୃତ ଦର୍ଶନଶାସ୍ତ୍ରର ସୃଷ୍ଟି ହୋଇଥିଲା । ବୌଦ୍ଧଧର୍ମର ଉନ୍ନତି ସଙ୍ଗେ ସଙ୍ଗେ ହିନ୍ଦୁଦର୍ଶନ ପ୍ରକୃତ ଉନ୍ନତି ଲାଭ କରିଥିଲା । ଦର୍ଶନଶାସ୍ତ୍ର ଛଅ ଭାଗରେ ବିଭକ୍ତ, ଯଥା :—୧. କପିଳଙ୍କ ସାଂଖ୍ୟ; ୨. ପାତଞ୍ଜଳିଙ୍କ ଯୋଗ; ୩. ଗୌତମଙ୍କ ନ୍ୟାୟ; ୪. କଣାଦଙ୍କ ବୈଶେଷିକ; ୫. ଜୈମିନିଙ୍କ ପୂର୍ବ ମୀମାଂସା; ୬. ବ୍ୟାସଦେବଙ୍କ ଉତ୍ତର ମୀମାଂସା ବା ବେଦାନ୍ତ ।

ଦାର୍ଶନିକମାନେ ବେଦ ଓ ଉପନିଷଦକୁ ମାନନ୍ତି । ଲୋକେ କିପରି ମୁକ୍ତି ଲଭିବେ ଅର୍ଥାତ୍ ସାଂସାରିକ କ୍ଳେଶରୁ ପରିତ୍ରାଣ ପାଇବେ ଏହା ସବୁ ଦର୍ଶନର ପ୍ରଧାନ ଲକ୍ଷ୍ୟସ୍ଥଳ । ସବୁପ୍ରକାର କ୍ଳେଶ ମନୁଷ୍ୟମାନଙ୍କର ଇହଜନ୍ମ ଓ ପୂର୍ବଜନ୍ମର କର୍ମଫଳ । ମନୁଷ୍ୟର ବର୍ତ୍ତମାନ ଜୀବନର କ୍ଳେଶ ମନୁଷ୍ୟକୁ ସମସ୍ତ ପାପରୁ ପରିତ୍ରାଣ କରିପାରେ ନାହିଁ ବୋଲି ମନୁଷ୍ୟମାନେ ପୁନଃ ପୁନଃ ଜନ୍ମଗ୍ରହଣ କରନ୍ତି । ତତ୍ତ୍ୱଜ୍ଞାନ ଲାଭ କଲେ ମନୁଷ୍ୟମାନେ ପୁଣି ଜନ୍ମଗ୍ରହଣ କରନ୍ତି ନାହିଁ । ଏଗୁଡ଼ିକ ଦର୍ଶନଶାସ୍ତ୍ରମାନଙ୍କର ମତ । ଦର୍ଶନଶାସ୍ତ୍ରଗୁଡ଼ିକ ବ୍ରାହ୍ମଣମାନଙ୍କ ଦ୍ୱାରା ପ୍ରଣୀତ ।

ବୌଦ୍ଧଧର୍ମ ଓ ଜୈନଧର୍ମ :—ଏହି ସମୟରେ ଅନେକ ସନ୍ନ୍ୟାସୀ ଧର୍ମପ୍ରବର୍ତ୍ତକ ଆବିର୍ଭୂତ ହୋଇଥିଲେ । ସେମାନଙ୍କର ଉପଦେଶାବଳୀ ସ୍ଥାନୀୟ ପ୍ରଚଳିତଭାଷାରେ ପ୍ରଚାରିତ ହେଉଥିବାରୁ ସର୍ବସାଧାରଣ

ସେଗୁଡ଼ିକ ଛୁଇଁପାରୁ ନ ଥିଲେ । ସେମାନଙ୍କ ମତ ଅନେକ ସ୍ଥଳରେ ବ୍ରାହ୍ମଣ୍ୟଧର୍ମର ମତଠାରୁ ଭିନ୍ନ ଥିଲା । ଏହି ସନ୍ନ୍ୟାସୀ ପ୍ରଚାରକମାନଙ୍କ ମଧ୍ୟରେ ଗୌତମ ବୁଦ୍ଧ ଓ ମହାବୀର ପ୍ରଧାନ ଥିଲେ । ଏହି ଦୁଇ ମହାପୁରୁଷଙ୍କ ବିଷୟ ପ୍ରଥମଭାଗରେ ବର୍ଣ୍ଣିତ ହୋଇଅଛି ।

ବୁଦ୍ଧଦେବ ଓ ବୌଦ୍ଧଧର୍ମ:—ଗୌତମ ବୁଦ୍ଧ ଜଣେ ରାଜପୁତ୍ର ଥିଲେ । ସେ ସଂସାର ତ୍ୟାଗକରି ବହୁକାଳ ତପସ୍ୟା କରିବାପରେ ବୌଦ୍ଧଧର୍ମ ନାମକ ଏକ ନୂତନ ଧର୍ମ ପ୍ରଚାର କରିଥିଲେ । ସେହି ଧର୍ମରେ ଜାତି-ଭେଦ କିମ୍ବା ଦେବଦେବୀ ମାନିବାର ବିଧି ନ ଥିଲା । କାମ, କ୍ରୋଧ ପ୍ରଭୃତି ରିପୁମାନେ ମନୁଷ୍ୟର ଦୁଃଖର କାରଣ ଅଟନ୍ତି । ସେମାନଙ୍କୁ ନିର୍ମୂଳ କଲେ ଶେଷରେ ନିର୍ବାଣପ୍ରାପ୍ତି ହୁଏ । ବୌଦ୍ଧମାନେ ଜନ୍ମାନ୍ତର ବିଶ୍ୱାସ କରନ୍ତି ଏବଂ କର୍ମଫଳ ମାନନ୍ତି । ସବୁ ଜୀବରେ ଦୟା ଏହି ଧର୍ମର ସାର ନୀତି ଅଟେ ।

ବୌଦ୍ଧମାନଙ୍କ ମଧ୍ୟରେ ଧର୍ମପ୍ରଚାରପ୍ରଥା ପ୍ରଚଳିତ ଥିବାରୁ ଓ ସେମାନେ ସମସ୍ତଲୋକଙ୍କୁ ଶିକ୍ଷା ଦେଉଥିବାରୁ ଅଳ୍ପଦିନମଧ୍ୟରେ ବୌଦ୍ଧଧର୍ମ ବିଶେଷ ଉନ୍ନତି ଲାଭ କରିଥିଲା । ଅଶୋକଙ୍କ ସମୟରେ ସମସ୍ତ ଭାରତବର୍ଷରେ ଏହା ବିସ୍ତାରିତ ହୋଇଥିଲା । ଯେଉଁ କାଳର କଥା ଏହି ଅଧ୍ୟାୟରେ ବର୍ଣ୍ଣିତ ହେଉଅଛି ସେହି କାଳ ଶେଷ ନ ହେବା-ପର୍ଯ୍ୟନ୍ତ ଏହି ଧର୍ମ ଭାରତରେ ଅକ୍ଷୁଣ୍ଣଭାବରେ ରହିଥିଲା । ତତ୍ପରେ ତାହା ଏଦେଶରୁ କ୍ରମେ ବିଲୁପ୍ତ ହେବାକୁ ବସିଲା । ବର୍ତ୍ତମାନ ପୃଥିବୀର ପ୍ରାୟ ଅର୍ଦ୍ଧାଂଶ ଲୋକ ଏହି ଧର୍ମାବଲମ୍ବୀ ।

ମହାବୀର ଓ ଜୈନଧର୍ମ:—ମହାବୀର ମଧ୍ୟ ରାଜପୁତ୍ର ଥିଲେ । ସେ ଜୈନଧର୍ମ ନାମକ ଏକ ଧର୍ମ ପ୍ରଚାର କରିଥିଲେ । ଏହି ଧର୍ମାବଲମ୍ବୀ-ମାନେ ବେଦ ମାନୁଥିଲେ । ଜୀବ ପ୍ରତି ଦୟା ଏମାନଙ୍କ ଧର୍ମର

ପ୍ରଧାନ ମାତ୍ର ଥିଲା । ମାତ୍ର ଜୈନଧର୍ମ ବିଶେଷ ଉନ୍ନତ ଲାଭ କରି ପାରି ନ ଥିଲା । ଭାରତଛଡ଼ା ଏହା ଅନ୍ୟତ୍ର ପ୍ରଚଳିତ ହୋଇ ନ ଥିଲା, ସୁତରାଂ ଭାରତବ୍ୟତୀତ ଏହି ଧର୍ମାବଲମ୍ବୀ ଅନ୍ୟତ୍ର ଦୃଷ୍ଟିଗୋଚର ହୁଅନ୍ତି ନାହିଁ ।

ଜ୍ୟୋତିଃଶାସ୍ତ୍ର ଓ ବୀଜଗଣିତ :—ଏହି ସମୟରେ ଜ୍ୟୋତିଃଶାସ୍ତ୍ର ବିଶେଷ ଉନ୍ନତି ଲଭିଥିଲା ଏବଂ କେତେଗୁଡ଼ିଏ ସିଦ୍ଧାନ୍ତ ଗ୍ରନ୍ଥ ମଧ୍ୟ ଲିଖିତ ହୋଇଥିଲା । ଏହି ଶାସ୍ତ୍ରମାନଙ୍କ ମଧ୍ୟରେ ସୂର୍ଯ୍ୟସିଦ୍ଧାନ୍ତ ପ୍ରଧାନ । ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ପଣ୍ଡିତ ଆର୍ଯ୍ୟଭଟ୍ଟ "ପୃଥିବୀ ଗୋଲାକାର ଏବଂ ତାହା ନିଜ ମେରୁଦଣ୍ଡର ଚାରିପାଖରେ ଘୂରୁଅଛି" ଏହା ଆବିଷ୍କାର କରିଥିଲେ । ସେ ୪୭୬ ଖ୍ରୀ: ଅ: ରେ କୁସୁମପୁରରେ ଜନ୍ମଗ୍ରହଣ କରିଥିଲେ । ବିକ୍ରମାଦିତ୍ୟଙ୍କ ସଭାରେ ମଧ୍ୟ ବରାହମିହିର ନାମକ ଏକ ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ପଣ୍ଡିତ ଥିଲେ । ବୀଜଗଣିତରେ ହିନ୍ଦୁମାନେ ଅତ୍ୟନ୍ତ ଉନ୍ନତି ଲଭିକରିଥିଲେ ଏବଂ ଏହି ସମୟରେ ସେ ବିଷୟରେ ଅନେକ ଗ୍ରନ୍ଥ ଲେଖାଯାଇଥିଲା ।

ଚିକିତ୍ସାଶାସ୍ତ୍ର :—ଏହି ସମୟରେ ଚିକିତ୍ସାଶାସ୍ତ୍ରର ମଧ୍ୟ ବିଶେଷ ଉନ୍ନତି ହୋଇଥିଲା । ଅଶୋକ ଓ ଅନ୍ୟାନ୍ୟ ଅନେକ ବୌଦ୍ଧରାଜାମାନେ ମନୁଷ୍ୟ ଓ ପଶୁଲାଗି ଚିକିତ୍ସାଳୟମାନ ସ୍ଥାପନ କରି ଉକ୍ତ ବିଦ୍ୟାର ବିଶେଷ ଉନ୍ନତି କରିଥିଲେ । ଚରକ ଓ ସୁଶ୍ରୁତ ଏହି ଦୁଇ ପ୍ରଧାନ ଚିକିତ୍ସାଗ୍ରନ୍ଥ ଏହି ସମୟରେ ରଚିତ ହୋଇଥିଲା ।

ସଂସ୍କୃତ ସାହିତ୍ୟ :—ଏହିକାଳର ପ୍ରଥମାଂଶରେ ଯେପରି ଧର୍ମ ଓ ଦର୍ଶନର ଉନ୍ନତି ହୋଇଥିଲା, ଶେଷାଂଶରେ ମଧ୍ୟ ସେହିପରି ସାହିତ୍ୟର ଉନ୍ନତି ହୋଇଥିଲା । ଏହି ସମୟର କବିମାନଙ୍କ ମଧ୍ୟରେ କାଳିଦାସ ସର୍ବଶ୍ରେଷ୍ଠ । ଏହାଙ୍କ କୃତ ରଘୁବଂଶ, କୁମାରସମ୍ଭବ ଏବଂ ଶକୁନ୍ତଳା ଭାରତବିଖ୍ୟାତ । ବାଣଭଟ୍ଟ ହର୍ଷବର୍ଦ୍ଧନଙ୍କ ସମୟର ଲୋକ ଥିଲେ ।

ସେ ଶ୍ରୀହର୍ଷଚରିତ ନାମକ ହର୍ଷବର୍ଦ୍ଧନଙ୍କ ଜୀବନଚରିତ ଏବଂ କାଦମ୍ବରୀ ନାମକ ଖଣ୍ଡିଏ ବିଖ୍ୟାତ ଉପନ୍ୟାସ ଲେଖିଥିଲେ । ବିକ୍ରମାଦିତ୍ୟଙ୍କ ସଭାର ପଣ୍ଡିତ ଅମରସିଂହ ଅମରକୋଷ ନାମକ ଏକ ସଂସ୍କୃତ ଶବ୍ଦକୋଷ ଲେଖି ଅକ୍ଷୟ କୀର୍ତ୍ତି ରଖିଯାଇଅଛନ୍ତି ।

ପ୍ରାଦେଶିକ କଥିତ ଭାଷା:—ଏହି ସମୟର ଧର୍ମସଂସ୍କାରକମାନଙ୍କ ଦ୍ୱାରା କଥିତ ଭାଷାର ମଧ୍ୟ ଉନ୍ନତି ସାଧିତ ହୋଇଥିଲା । ବ୍ରାହ୍ମଣମାନେ ସେମାନଙ୍କ ଧର୍ମସମ୍ବନ୍ଧୀୟ ଗ୍ରନ୍ଥମାନ ସଂସ୍କୃତରେ ଲେଖୁଥିଲେ । କିନ୍ତୁ ବୌଦ୍ଧ ଓ ଜୈନ ପ୍ରଚାରକମାନେ ପ୍ରାଦେଶିକ କଥିତ ଭାଷାରେ ଧର୍ମ-ସମ୍ବନ୍ଧୀୟ ଗଳ୍ପମାନ ଲେଖି ଲୋକମାନଙ୍କୁ ଶିକ୍ଷା ଦେଉଥିଲେ । ଜୈନ-ମାନେ ମହାରାଷ୍ଟ୍ରୀୟ ଭାଷାର ଓ ବୌଦ୍ଧମାନେ ମଗଧରେ ପ୍ରଚଳିତ ପାଲିଭାଷାର ଉନ୍ନତି ସାଧନ କରୁଥିଲେ । ପ୍ରାୟ ସମସ୍ତ ବୌଦ୍ଧଗ୍ରନ୍ଥ ପାଲିଭାଷାରେ ଲିଖିତ ।

ଶିଳ୍ପ ଓ ଭାସ୍କର କାର୍ଯ୍ୟ :—ପ୍ରାଚୀନ ମନ୍ଦିର ଓ ବୌଦ୍ଧମାନଙ୍କର ଭଗ୍ନ-ସ୍ତୂପମାନଙ୍କରୁ ପୂର୍ବକାଳର ଶିଳ୍ପ ଓ ଭାସ୍କର କାର୍ଯ୍ୟର ପରିଚୟ ମିଳେ । ଇଲୋରା, ଏଲିଫାଣ୍ଟା ଓ ଖଣ୍ଡଗିରି ପ୍ରଭୃତି ଗୁହାମାନ ଆଉ ସେଥିରେ ଥିବା ଖୋଦିତ କାର୍ଯ୍ୟମାନ ସେକାଳର ଶିଳ୍ପର ପରିଚୟ ଦେଉଅଛି ।

ବାଣିଜ୍ୟ ଓ ବିଦେଶରେ ଉପନିବେଶ-ସଂସ୍ଥାପନ :—ମନୁସଂହିତା ରଚିତ ହେବାପୂର୍ବରୁ ହିନ୍ଦୁମାନେ ବାଣିଜ୍ୟ କରିବା ଲାଗି ଜାହାଜ ଚଢ଼ି ବିଦେଶକୁ ଯାଉଥିଲେ । ଆରବସାଗରରେ ସେମାନେ ବେଶି ବାଣିଜ୍ୟ କରୁ ନ ଥିଲେ । କିନ୍ତୁ ବଙ୍ଗୋପସାଗରରେ ସେମାନେ ଜାହାଜରେ ଚଢ଼ି ମାଲୟ, ଜାଭା, ସୁମାତ୍ରା ଓ ଚୀନ ପର୍ଯ୍ୟନ୍ତ ଗମନାଗମନ କରି ପାରୁଥିଲେ । ଖ୍ରୀ: ପୂ: ପାଞ୍ଚଶତ ବର୍ଷ ପୂର୍ବେ ବଙ୍ଗଳାର ହିନ୍ଦୁମାନେ ସିଂହଳଦ୍ୱୀପ

ଜୟ କରି ସେଠାରେ ବସତି କରିଥିଲେ । ଜାଭା ଓ ତାହାର ନିକଟ-ବର୍ତ୍ତୀ ଦ୍ୱୀପମାନଙ୍କରେ ମଧ୍ୟ ଏଦେଶୀୟମାନେ ବସତି ସ୍ଥାପନ କରିଥିଲେ । ଚୀନଦେଶର ପରିବ୍ରାଜକ ଫାହିୟାନ୍ ପଞ୍ଚମ ଶତାବ୍ଦୀରେ ଭାରତବର୍ଷ ଭ୍ରମଣ କରିବା ସମୟରେ ହିନ୍ଦୁମାନଙ୍କ ଦ୍ୱାରା ଚାଳିତ ଜାହାଜରେ ଚଢ଼ି ବଙ୍ଗଳାରୁ ସିଂହଳ ଏବଂ ସିଂହଳରୁ ଜାଭାଦ୍ୱୀପକୁ ଯାଇଥିବାର ଲେଖି-ଅଛନ୍ତି ।

ସାଧାରଣ ଶିକ୍ଷାର ବିସ୍ତାର :—ବୌଦ୍ଧ ସନ୍ନ୍ୟାସୀମାନଙ୍କ ଦ୍ୱାରା ଜନ-ସାଧାରଣଙ୍କ ଶିକ୍ଷାର ବିଶେଷ ଉନ୍ନତି ହୋଇଥିଲା । ଏମାନଙ୍କର ମଠମାନ ଜନଶିକ୍ଷାର ଏକ ଏକ କେନ୍ଦ୍ରସ୍ଥଳୀ ଥିଲା । କୌଣସି କୌଣସି ବୌଦ୍ଧ-ମଠରେ ବହୁସହସ୍ର ଛାତ୍ର ଶିକ୍ଷାପ୍ରାପ୍ତ ହେଉଥିବାର ଜଣାଯାଏ । ଏହି ଶିଷ୍ୟ-ମାନଙ୍କ ମଧ୍ୟରୁ ଅନେକେ ଚୀନ, ଶ୍ୟାମ ଏବଂ ଅନ୍ୟାନ୍ୟ ଦୂରଦେଶରୁ ଆସି-ଥିଲେ । ନାଳନ୍ଦର ମଠ ଏହି ସମୟର ସର୍ବପ୍ରଧାନ ବିଦ୍ୟାଳୟ । ଏହି ବିଦ୍ୟାଳୟର ବିଭିନ୍ନ ବିଭାଗରେ ଶିକ୍ଷା ଦେବାଲାଗି ପ୍ରାୟ ଶହେଗୋଟି ପ୍ରକୋଷ୍ଠ ଥିଲା । ଆଉ ସେଥିରେ ପ୍ରାୟ ଦଶହଜାର ସନ୍ନ୍ୟାସୀ ଶିକ୍ଷକ ଓ ଛାତ୍ର ବାସ କରୁଥିଲେ । ଛାତ୍ରମାନେ ଗ୍ରାସାଚ୍ଛାଦନ ପାଉଥିଲେ ଏବଂ ବିନା ବେତନରେ ପାଠ ପଢୁଥିଲେ । ଏହାଛଡ଼ା ଅସଂଖ୍ୟ ଟୋଲ ମଧ୍ୟ ଥିଲା । ତହିଁରେ ବ୍ରାହ୍ମଣମାନେ ବିନାବେତନରେ ଛାତ୍ରମାନଙ୍କୁ ଶିକ୍ଷାଦାନ କରୁଥିଲେ ।

ମେଗାସ୍ଥିନିସ୍-ବର୍ଣ୍ଣିତ ଭାରତର ବିବରଣ :—ମେଗାସ୍ଥିନିସ୍ ହିନ୍ଦୁ-ମାନଙ୍କୁ ସାତ ଜାତିରେ ବିଭକ୍ତ କରିଅଛନ୍ତି । ଯଥା—ବିଦ୍ୟା ଓ ଧର୍ମର ବ୍ୟବସାୟୀ, ରାଜସଭାସଦ୍ ବା ପରାମର୍ଶଦାତା, ଯୋଦ୍ଧା, ରାଜକର୍ମଚାରୀ, କୃଷକ, ବିବିଧ ଶିଳ୍ପ-ବ୍ୟବସାୟୀ, ମେଷରକ୍ଷକ । ମେଗାସ୍ଥିନିସ୍ ବୋଧ-ହୁଏ ବ୍ରାହ୍ମଣ, କ୍ଷତ୍ରିୟ ପ୍ରଭୃତି ଚାରି ଜାତିକୁ ବ୍ୟବସାୟଭେଦରେ ସାତ

ଜାତି ବୋଲି ବର୍ଣ୍ଣନା କରିଅଛନ୍ତି । ବିଦ୍ୟା ଓ ଧର୍ମର ବ୍ୟବସାୟୀମାନେ ବ୍ରାହ୍ମଣ ଓ ବୌଦ୍ଧସନ୍ୟାସୀ ଅଟନ୍ତି । ପରାମର୍ଶଦାତାମାନେ ବ୍ରାହ୍ମଣ ଓ କ୍ଷତ୍ରିୟ, ଯୋଦ୍ଧା ଓ ରାଜକର୍ମଚାରୀମାନେ କ୍ଷତ୍ରିୟ, କୃଷକ ଓ ଶିଳ୍ପ-ବ୍ୟବସାୟୀମାନେ ବୈଶ୍ୟ ଓ ଶଙ୍କରଜାତୀୟ ଲୋକ ଥିବାର ବୋଧହୁଏ । ମେଷରକ୍ଷକମାନେ ଶୁଦ୍ର ଓ ପାହାଡ଼ିଆ ଜାତି ଅଟନ୍ତି । ହିନ୍ଦୁମାନଙ୍କର ସ୍ୱଭାବ ସରଳ ଥିଲା । ସେମାନେ ସତ୍ୟବାଦୀ, ମିତବ୍ୟୟୀ, ଶାନ୍ତପ୍ରକୃତି ଓ ଯୁଦ୍ଧନିପୁଣ ଥିଲେ । କ୍ରୀତଦାସପ୍ରଥା ସେ ସମୟରେ ସେମାନଙ୍କ ମଧ୍ୟରେ ପ୍ରଚଳିତ ନ ଥିଲା । କଳାନ୍ତର ଗ୍ରହଣ କରି ଋଣଦେବା ପ୍ରଥା ମଧ୍ୟ ନ ଥିଲା । ସେମାନେ ଏପରି ନ୍ୟାୟପରାୟଣ ଥିଲେ ଯେ, କେହି ଚୋରି କରୁ ନ ଥିଲେ କିମ୍ବା ଅଭିଯୋଗ କରିବା ଲାଗି କାହାରିକି ରାଜଦ୍ୱାରକୁ ଯିବାକୁ ପଡୁ ନ ଥିଲା । ସେମାନଙ୍କ ପରିଚ୍ଛଦରେ ଆଡ଼ମ୍ବର ନ ଥିଲା । ଖଣ୍ଡିଏ ଧୋତି, ଖଣ୍ଡିଏ ଚଦର, ଖଣ୍ଡିଏ ଛତା, ଯୋଡ଼ାଏ ସାମାନ୍ୟ ଜୋତା ମନୁଷ୍ୟର ସାଧାରଣ ପରିଚ୍ଛଦ ଥିଲା । କୃଷି ଉନ୍ନତ ଅବସ୍ଥାରେ ଥିଲା । ଦୁର୍ଭିକ୍ଷ କଣ ତାହା ସେମାନେ ଜାଣି ନ ଥିଲେ । ରମଣୀମାନେ ପତିବ୍ରତା ଥିଲେ । ସତୀଦାହ ଅଳ୍ପପରିମାଣରେ ପ୍ରଚଳିତ ଥିଲା । ଗୁଡ଼ଜଳର ମଦ୍ୟ ଛଡ଼ା ଆଉ କୌଣସି ପ୍ରକାର ମଦ୍ୟ ବ୍ୟବହୃତ ହେଉ ନ ଥିଲା ; ତାହା ମଧ୍ୟ ଅତି ଅଳ୍ପପରିମାଣରେ ବ୍ୟବହୃତ ହେଉଥିଲା ।

ଫା[redacted]ତ ଭାରତ-ବିବରଣ:—ପୂର୍ବେ କୁହାଯାଇଅଛି ଯେ, [redacted] ପଞ୍ଚମ ଶତାବ୍ଦୀର ପ୍ରଥମ ଭାଗରେ ଚୀନରୁ ଭାରତକୁ ଆସିଥିଲେ । ସେ ଉତ୍ତର-ଭାରତର ଅନେକ ପ୍ରଦେଶ ବୁଲିଥିଲେ । ତାହାଙ୍କ ଲିଖିତ ବିବରଣରୁ ଜଣାଯାଏ ଯେ ସେକାଳରେ ଭାରତର ଲୋକେ ବଡ଼ ସୁଖୀ ଥିଲେ ଏବଂ ସନ୍ତୋଷରେ ଦିନ କଟାଉଥିଲେ । ସେମାନେ ରାଜାଙ୍କୁ ବିଶେଷ ଖଜଣା ଦେଉ ନ ଥିଲେ । ସେମାନେ ଅତ୍ୟନ୍ତ

ମିତାଚାରୀ ଥିଲେ ଏବଂ ଜୀବହତ୍ୟାକୁ ଅତ୍ୟନ୍ତ ଘୃଣା କରୁଥିଲେ । ଫୌଜଦାରି ଆଇନସମୂହ କଠୋର ନ ଥିଲା ଏବଂ କାର୍ଯ୍ୟକ ଦଣ୍ଡ ଦିଆଯାଉ ନ ଥିଲା । ସେକାଳର ହିନ୍ଦୁମାନେ ହିଁ ପ୍ରକୃତ ସ୍ୱାଧୀନତାର ସୁଖ ଭୋଗ କରୁଥିଲେ ।

ହୁଏନ୍‌ସାଂ-ବର୍ଣ୍ଣିତ ଭାରତ-ବିବରଣ :—ପ୍ରସିଦ୍ଧ ଚୀନ-ପରିବ୍ରାଜକ ହୁଏନ୍‌ସାଂ ୬୩୦ ଖ୍ରୀ : ଅ : ରେ ଭାରତକୁ ଆସି ଏଠାରେ ୧୫ବର୍ଷ ରହି ଉତ୍ତର ଓ ଦକ୍ଷିଣ ଭାରତବର୍ଷର ଅନେକ ସ୍ଥାନ ବୁଲି ଯାହା ଲେଖିଯାଇଅଛନ୍ତି ତାହା ନିମ୍ନରେ ଦିଆଗଲା ।

ସେ ନାଲନ୍ଦ-ବିଦ୍ୟାଳୟର ବିଷୟ ବିଶେଷରୂପେ ଲେଖିଯାଇଅଛନ୍ତି । ସେ ଦକ୍ଷିଣ-ଭାରତରେ ଚାଲୁକ୍ୟମାନଙ୍କର ସାହସ ଦେଖି ବିଶେଷ ପ୍ରଶଂସା କରିଅଛନ୍ତି । ତେତେବେଳେ ମଗଧ ଓ ମାଳବ ଦେଶରେ ବିଦ୍ୟାର ଅତ୍ୟନ୍ତ ସମାଦର ଥିଲା । ଧନ ଓ ବାଣିଜ୍ୟରେ ଗୁଜରାଟ ବିଖ୍ୟାତ ଥିଲା । ଦେଶର ଶାସନପ୍ରଥା କଠୋର ନ ଥିଲା । ରାଜକର ଅତ୍ୟନ୍ତ ସାମାନ୍ୟ ଥିଲା । ରାଜାଙ୍କର ପ୍ରଧାନ କର୍ମଚାରୀମାନେ ଜାଗିର ପ୍ରାପ୍ତ ହେଉଥିଲେ । ରାଜା ନିଜ ଭୂମି ଚାରିଭାଗରେ ବିଭକ୍ତ କରି ଏକ ଭାଗରୁ ରାଜ୍ୟର ବ୍ୟୟ ନିର୍ବାହ କରୁଥିଲେ, ଦ୍ୱିତୀୟ ଭାଗକୁ ରାଜକର୍ମଚାରୀମାନଙ୍କୁ ଜାଗିରସ୍ୱରୂପ ଦେଉଥିଲେ, ତୃତୀୟ ଭାଗ ଶାସ୍ତ୍ରଜ୍ଞ ବ୍ୟକ୍ତିମାନଙ୍କୁ ଦେଇ ଚତୁର୍ଥ ଭାଗକୁ ଧର୍ମକାର୍ଯ୍ୟରେ ବ୍ୟୟ କରୁଥିଲେ । ମେଗାସ୍ଥିନିସ୍‌ଙ୍କ ପରି ହୁଏନ୍‌ସାଂ ମଧ୍ୟ ହିନ୍ଦୁମାନଙ୍କର ସରଳତା ଓ ସତ୍ୟବାଦିତାର ଅତ୍ୟନ୍ତ ପ୍ରଶଂସା କରିଅଛନ୍ତି ।

---

ବ୍ରାହ୍ମଣ୍ୟଧର୍ମର ପୁନରୁତ୍ଥାନ-ଯୁଗରେ ରାଜନୈତିକ ଅବସ୍ଥା ।

ହର୍ଷବର୍ଦ୍ଧନଙ୍କ ମୃତ୍ୟୁପରେ ତାହାଙ୍କ ସାମ୍ରାଜ୍ୟ ବିଲୁପ୍ତ ହୋଇଥିଲା ।

ଅଧୀନସ୍ଥ ରାଜାମାନେ ନିଜ ନିଜ ପ୍ରାଧାନ୍ୟ ସ୍ଥାପନ କରିବାକୁ ଚେଷ୍ଟା କଲେ । ସେମାନଙ୍କ ମଧ୍ୟରେ ବହୁକାଳବ୍ୟାପୀ ବିବାଦ ଉପସ୍ଥିତ ହେଲା । ଯେତେବେଳେ ଏହିପରି ବିବାଦ ଲାଗିଥିଲା, ସେତେବେଳେ ଭାରତର ଉତ୍ତର-ପଶ୍ଚିମ ଦିଗରୁ ନୂତନ ଆକ୍ରମଣକାରୀମାନେ ଉପସ୍ଥିତ ହୋଇଥିଲେ । ସେମାନେ ଆରବଦେଶର ମୁସଲମାନ ।

ମୁସଲମାନମାନଙ୍କର ଆକ୍ରମଣ ଓ ସିନ୍ଧୁପ୍ରଦେଶର ଜୟ:—ଅନେକ ଦିନରୁ ମୁସଲମାନମାନେ ଭାରତ ଅଧିକାର କରିବାଲାଗି ଚେଷ୍ଟା କରୁଥିଲେ ଏବଂ ମଧ୍ୟେ ମଧ୍ୟେ ଭାରତକୁ ଆସି ଲୁଟିକରି ଚାଲିଯାଉଥିଲେ । ୭୧୧ ଖ୍ରୀ: ଅ: ରେ ଏପରି ଗୋଟିଏ ଘଟଣା ଘଟିଥିଲା ଯେ ମୁସଲମାନମାନେ ଭାରତ ଆକ୍ରମଣ କରିବାଲାଗି ନିୟମିତରୂପେ ସୈନ୍ୟ ପଠାଇଥିଲେ । ଏହି ବର୍ଷ ସିଂହଳର ରାଜା ପାରସ୍ୟର ମୁସଲମାନ-ଶାସନକର୍ତ୍ତା ହଜାଜଙ୍କ ପାଖକୁ ଉପଢୌକନ ଓ ଯାତ୍ରୀସହ କେତେଖଣ୍ଡି ଜାହାଜ ପଠାଇଥିଲେ । ସିନ୍ଧୁପ୍ରଦେଶର ଉପକୂଳବର୍ତ୍ତୀ ଜଳଦସ୍ୟୁମାନେ ଏହିସବୁ ଜାହାଜ ଲୁଟି କରି ନେଇଥିଲେ । ହଜାଜ କ୍ଷତିପୂରଣ ସକାଶେ ସିନ୍ଧୁପ୍ରଦେଶର ରାଜା ଡାହିରଙ୍କ ପାଖରେ ଦାବୀ କଲେ । ଜଳଦସ୍ୟୁମାନଙ୍କ ଉପରେ କିଛି କ୍ଷମତା ନାହିଁ ବୋଲି କହି ଡାହିର କ୍ଷତିପୂରଣ ଦେବା ସକାଶେ ଅସ୍ୱୀକାର କଲେ । ପାରସ୍ୟର ଶାସନକର୍ତ୍ତା ଏହି ଛଳନାରେ ଡାମାସ୍କସର ଖାଲିଫାଙ୍କଠାରୁ ଅନୁମତି ଆଣି ଡାହିରଙ୍କ ବିରୁଦ୍ଧେ ସୈନ୍ୟ ପଠାଇଲେ । ମାତ୍ର ମୁସଲମାନମାନେ ପରାଜିତ ହେଲେ । ପାରସ୍ୟର ଶାସନକର୍ତ୍ତା ଆଉ ଥରେ ସୈନ୍ୟ ପଠାଇଥିଲେ; କିନ୍ତୁ ଏଥର ସୁଦ୍ଧା ସେମାନେ ପରାଜିତ ହେଲେ । ତହିଁପରେ ହଜାଜ ତାଙ୍କର ଜାମାତା କାସିମଙ୍କୁ ଅନେକ ସୈନ୍ୟସହ ପଠାଇଥିଲେ । ଏଥର ଡାହିର ଯୁଦ୍ଧରେ ପରାଜିତ ହୋଇ ନିହତ ହେଲେ । ତହିଁପରେ ମୁସଲମାନମାନେ

ମୁଲତାନ ଅଧିକାର କଲେ । ଏହିରୂପେ ସିନ୍ଧୁପ୍ରଦେଶ ମୁସଲମାନ-ମାନଙ୍କର ହସ୍ତଗତ ହେଲା ।

ଉତ୍ତରଭାରତବର୍ଷର ଅବସ୍ଥା :—ନବମ ଶତାବ୍ଦୀର ମଧ୍ୟଭାଗରେ ଭାରତର ରାଜନୈତିକ ଅବସ୍ଥା ନୂତନ ଆକାର ଧରିଥିଲା । ଉତ୍ତର ଭାରତରୁ ସାମ୍ରାଜ୍ୟ ଲୋପ ପାଇ ତାହା ସାନ ସାନ ରାଜ୍ୟରେ ବିଭକ୍ତ ହୋଇଥିଲା । ପ୍ରତ୍ୟେକ ରାଜ୍ୟରେ ନବ ଶାସନ ଓ ଧର୍ମ ଚଳୁଥିଲା । ଏହି ରାଜ୍ୟମାନଙ୍କ ମଧ୍ୟରେ ଦେବଗିରି ଓ ଦ୍ୱାରସମୁଦ୍ରର ଯାଦବରାଜ୍ୟ, ବାରଙ୍ଗଲର କାକତୀୟ ରାଜ୍ୟ ଏବଂ ଓଡ଼ିଶାର ଗଙ୍ଗାବଂଶୀୟ ରାଜ୍ୟ ପ୍ରଧାନ ଥିଲା । ଉତ୍ତର-ଭାରତର ଅବସ୍ଥା ଏହାଠାରୁ ବଳି ଶୋଚନୀୟ ଥିଲା । କାଶ୍ମୀରରେ ଉତ୍ପଳବଂଶର ପତନ ହୋଇଥିଲା । ସେଠାରେ ଲୋହାର-ବଂଶ ରାଜତ୍ୱ କରୁଥିଲେ । ପାରମାରବଂଶର ରାଜା ମାଳବ ଏବଂ ଗୁଜରାଟରେ ରାଜତ୍ୱ କରୁଥିଲେ । ବଙ୍ଗଳାରେ ଏକାଦଶ ଶତାବ୍ଦୀର ଶେଷଭାଗରେ ସେନବଂଶ ପ୍ରାଧାନ୍ୟ ଲାଭ କରିଥିଲା, ଏବଂ ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗରେ ବଲ୍ଲାଳସେନ ପାଳବଂଶଠାରୁ ମଗଧର ଅନେକାଂଶ ଛଡ଼ାଇନେଇଥିଲେ । ରାଷ୍ଟ୍ରକୂଟ ବା ରାଠୋରମାନେ କାନ୍ୟକୁବ୍ଜରେ ନିଜ ପ୍ରାଧାନ୍ୟ ସ୍ଥାପନ କରିଥିଲେ ଏବଂ ଚୌହାନରାଜା ପୃଥ୍ୱୀରାଜ ଅଜମୀରରେ ଓ ଜୟଚନ୍ଦ୍ର କାନ୍ୟକୁବ୍ଜରେ ରାଜପଣ କରୁଥିଲେ ।

ପଠାଣମାନଙ୍କ କର୍ତ୍ତୃକ ଉତ୍ତରଭାରତ ବିଜୟ :—ଯେତେବେଳେ ଭାରତର ଏହିପରି ଅବସ୍ଥା, ସେତେବେଳେ ଅଫଗାନସ୍ଥାନରେ ଗଜନୀ-ରାଜ୍ୟର ପତନ ହୋଇଥିଲା । ଘୋରବଂଶୀୟ ରାଜାମାନେ ପରାକ୍ରମୀ ହୋଇ ଗଜନୀରାଜାଙ୍କଠାରୁ ପଞ୍ଜାବପ୍ରଦେଶ ଅଧିକାର କରିନେଇ-ଥିଲେ । ଅତଏବ ଘୋରରାଜ୍ୟ ଏବଂ ପୃଥ୍ୱୀରାଜଙ୍କ ରାଜ୍ୟ ଲଗାଲଗି

ହୋଇଥିଲା । ଏହି ସମୟରେ ଜୟଚନ୍ଦ୍ର ଓ ପୃଥ୍ୱୀରାଜଙ୍କ ମଧ୍ୟରେ କଳହ ଲାଗିବାରୁ ଜୟଚନ୍ଦ୍ର ଘୋରସର୍ଦ୍ଦାର ମହମ୍ମଦଘୋରୀଙ୍କୁ ପୃଥ୍ୱୀରାଜଙ୍କ ରାଜ୍ୟ ଆକ୍ରମଣ କରିବାଲାଗି ଆହ୍ୱାନ କରିଥିଲେ । ତହିଁପରେ ଭାରତ ଉପରେ ପଠାଣମାନଙ୍କର କରାୟତ୍ତ ହେଲା ତାହା ତୁମ୍ଭେମାନେ ଆଗରୁ ପାଠ କରିଅଛ ।

---

## ବ୍ରାହ୍ମଣ୍ୟଧର୍ମର ପୁନରୁତ୍ଥାନ ଯୁଗରେ ସାମାଜିକ ଅବସ୍ଥା ।

ସାହିତ୍ୟ ଓ ବିଜ୍ଞାନର ଉନ୍ନତି :—ଭାରତବର୍ଷ କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ରାଜ୍ୟରେ ବିଭକ୍ତ ହେବାରୁ ସାହିତ୍ୟ ଓ ବିଜ୍ଞାନର ଉନ୍ନତି-ପଥ ସୁଗମ ହୋଇଥିଲା । ଅଷ୍ଟମ ଶତାବ୍ଦୀରେ ପ୍ରସିଦ୍ଧ କବି ଭବଭୂତି ଜନ୍ମଗ୍ରହଣ କରିଥିଲେ । କାଳିଦାସଙ୍କପରି ଏ ଜଣେ ବିଖ୍ୟାତ ନାଟକ-ଲେଖକ ଥିଲେ । ମହାବୀରଚରିତ ଓ ଉତ୍ତରରାମଚରିତ ଏହାଙ୍କ ଦ୍ୱାରା ରଚିତ । ୧୧୪୯ ରେ କଲହନ୍ ନାମକ ଏକ ବ୍ୟକ୍ତି ରାଜତରଙ୍ଗିଣୀ ନାମକ କାଶ୍ମୀରର ଇତିହାସ ଲେଖିଥିଲେ । ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗରେ ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ପଣ୍ଡିତ ଭାସ୍କରାଚାର୍ଯ୍ୟ ଜନ୍ମଗ୍ରହଣ କରିଥିଲେ । ସେ ଦାକ୍ଷିଣାତ୍ୟର ଲୋକ ଥିଲେ । ତାଙ୍କର ସିଦ୍ଧାନ୍ତଶିରୋମଣିରେ ସେ ସପ୍ରମାଣ କରିଅଛନ୍ତି ଯେ ପୃଥିବୀ ଗୋଲ ଏବଂ ତାହାର କ୍ଷୁଦ୍ର ପଦାର୍ଥମାନଙ୍କ ଆକର୍ଷଣ କରିବାର ଶକ୍ତି ଅଛି ।

ହିନ୍ଦୁ-ଶିଳ୍ପର ପୁନରୁତ୍ଥାନ :—ବୌଦ୍ଧଧର୍ମର ପତନ ସଙ୍ଗେ ସଙ୍ଗେ ବୌଦ୍ଧ ଶିଳ୍ପ ଓ ଭାସ୍କର ବିଦ୍ୟାର ଅବନତି ଘଟିଥିଲା । କିନ୍ତୁ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନରେ ହିନ୍ଦୁମାନଙ୍କର ଶିଳ୍ପ ଓ ଭାସ୍କର ବିଦ୍ୟାର ଉନ୍ନତି ହୋଇଥିଲା । ଇଲୋରାର ପର୍ବତଗୁହାର ମନ୍ଦିରମାନ ଅଷ୍ଟମ ଶତାବ୍ଦୀରେ

ନିର୍ମିତ ହୋଇଥିଲା । ସେଗୁଡ଼କର ଶିଳ୍ପକର୍ମ ହିନ୍ଦୁମାନଙ୍କର ନୈପୁଣ୍ୟ ପ୍ରକାଶ କରୁଅଛି । ଓଡ଼ିଶାରେ ପୁରୀର ଜଗନ୍ନାଥମନ୍ଦିର ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା । ଏଦ୍ୱାରା ଶିଳ୍ପ ଓ କାରୁକାର୍ଯ୍ୟ ସେ ସମୟର ଓଡ଼ିଆମାନଙ୍କର କାର୍ଯ୍ୟ-ନୈପୁଣ୍ୟ ଦେଖାଇଦେଉଅଛି ।

ଅଧୁନିକ ହିନ୍ଦୁଧର୍ମର ଉତ୍ପତ୍ତି :—ବୌଦ୍ଧଧର୍ମର ପତନ ଓ ନୂତନ ଆକୃତିରେ ବ୍ରାହ୍ମଣ୍ୟଧର୍ମର ଉଦୟ ଏହି ସମୟର ପ୍ରଧାନ ଘଟନା । ବୌଦ୍ଧଧର୍ମ କେବେହେଁ ବ୍ରାହ୍ମଣ୍ୟଧର୍ମର ଲୋପସାଧନ କରିପାରି ନ ଥିଲା । ଦୁଇଧର୍ମ ଏକତ୍ର ରହି କାର୍ଯ୍ୟ କରୁଥିଲେ । ଉତ୍ତର-ଭାରତର ରାଜା-ମାନେ ବୌଦ୍ଧ ହେବାରୁ ପ୍ରଜାମାନେ ମଧ୍ୟ ବୌଦ୍ଧଧର୍ମ ଗ୍ରହଣ କରି-ଥିଲେ । ଏଣୁ ବୌଦ୍ଧଧର୍ମ ବ୍ରାହ୍ମଣ୍ୟଧର୍ମଠାରୁ ବେଶି ଉନ୍ନତି ଲାଭ କରି-ଥିଲା । କିନ୍ତୁ ଯେତେବେଳେ ବ୍ରାହ୍ମଣ୍ୟଧର୍ମାବଲମ୍ବୀ ରାଜାମାନେ କ୍ଷମତା-ଶାଳୀ ହେଲେ ତେତେବେଳେ ବୌଦ୍ଧଧର୍ମର ପତନ ଏବଂ ବ୍ରାହ୍ମଣ୍ୟଧର୍ମର ଉନ୍ନତି ଆରମ୍ଭ ହେଲା । ଅଧିକନ୍ତୁ ମଧ୍ୟ ବ୍ରାହ୍ମଣମାନେ ପୁରାତନ ଧର୍ମକୁ ଲୋକରଞ୍ଜନ-ଆକୃତିରେ ଆଣିବାପାଇଁ ଚେଷ୍ଟା କରିଥିଲେ । ଏଣୁ ଦେବ-ଦେବୀମାନଙ୍କ ବିଷୟରେ କାଳ୍ପନିକ ଗଳ୍ପମାନ ପ୍ରସ୍ତୁତ ହୋଇଥିଲା । ସେମାନଙ୍କର ନାନାପ୍ରକାର ପ୍ରତିମୂର୍ତ୍ତି ସ୍ଥାପିତ ହୋଇଥିଲା । ତୀର୍ଥସ୍ଥାନ-ମାନଙ୍କର ସଂଖ୍ୟା ବର୍ଦ୍ଧିତ ହୋଇଥିଲା । ସେଠାରେ ପୂଜା, ମେଳା, ଦାନାଦିର ସୃଷ୍ଟି ହୋଇଥିଲା । ଏହି ନୂତନ ଆକୃତିର ହିନ୍ଦୁଧର୍ମକୁ ପୌରାଣିକ ଧର୍ମ କୁହାଯାଏ । ଏହି ସମୟରେ ବ୍ରାହ୍ମଣମାନଙ୍କ ମଧ୍ୟରେ ଯେଉଁ ମହାପୁରୁଷମାନେ ଜନ୍ମଗ୍ରହଣ କରି ଯୁକ୍ତିଦ୍ୱାରା ବୌଦ୍ଧମତ ଖଣ୍ଡନ-ପୂର୍ବକ ହିନ୍ଦୁଧର୍ମର ପୁନଃ ପ୍ରଚାର ଆରମ୍ଭ କରିଥିଲେ ତଳେ ସେମାନଙ୍କର ସଂକ୍ଷିପ୍ତ ବିବରଣ ଦିଆଗଲା :—

କୁମାରିଲ ଭଟ୍ଟ :—ସେ ବିହାର ପ୍ରଦେଶରେ ଅଷ୍ଟମ ଶତାବ୍ଦୀରେ

ଜନ୍ମଗ୍ରହଣ କରିଥିଲେ । ସେଠାରୁ ସେ ଦାକ୍ଷିଣାତ୍ୟକୁ ଯାଇ ହିନ୍ଦୁଧର୍ମ୍ମ ପ୍ରଚାର କରିଥିଲେ । ଏହାଙ୍କ ପ୍ରଚାରରେ ଅନେକ ଲୋକ ବୌଦ୍ଧଧର୍ମ୍ମ ଛାଡ଼ି ହିନ୍ଦୁଧର୍ମ୍ମ ଗ୍ରହଣ କରିଥିଲେ ।



ଶଙ୍କରାଚାର୍ଯ୍ୟ ।

ଶଙ୍କରାଚାର୍ଯ୍ୟ :—ମାଲବପ୍ରଦେଶର ଏକ ଦରିଦ୍ର ବ୍ରାହ୍ମଣଗୃହରେ ଶଙ୍କରାଚାର୍ଯ୍ୟ ଜନ୍ମଗ୍ରହଣ କରିଥିଲେ (୭୮୮) । ଶଙ୍କରାଚାର୍ଯ୍ୟ ବୌଦ୍ଧ-

ଧର୍ମର ବଡ଼ ବିରୋଧୀ ଥିଲେ । ସେ ଯୁକ୍ତିବଳରେ ବୌଦ୍ଧ ପଣ୍ଡିତମାନଙ୍କୁ ପରାସ୍ତ କରି ବେଦାନ୍ତମତ ସ୍ଥାପନ କରିଥିଲେ । ଏହି ମହାପୁରୁଷ ସ୍ୱମତର ପ୍ରଚାର ନିମନ୍ତେ କୁମାରିକାଠାରୁ ହିମାଳୟ ପର୍ଯ୍ୟନ୍ତ ନାନା ପ୍ରଦେଶ ବୁଲିଥିଲେ । କଥିତ ଅଛି ଅନେକ ବୌଦ୍ଧ ପଣ୍ଡିତ ଏହାଙ୍କ ଯୁକ୍ତିବଳରେ ପରାସ୍ତ ହୋଇ ଆତ୍ମହତ୍ୟା କରିଥିଲେ । ଶଙ୍କରାଚାର୍ଯ୍ୟ ୩୨ ବର୍ଷ ବୟସରେ ହିମାଳୟର କେଦାରନାଥଠାରେ ପ୍ରାଣତ୍ୟାଗ କରିଥିଲେ (୮୨୦) । ଏହି ଅଳ୍ପକାଳମଧ୍ୟରେ ସେ ପ୍ରାୟ ସମୁଦାୟ ହିନ୍ଦୁଶାସ୍ତ୍ର ଉପରେ ଭାଷ୍ୟ ଲେଖିଯାଇଅଛନ୍ତି ।

ରାମାନୁଜ :—ଶଙ୍କରାଚାର୍ଯ୍ୟଙ୍କ ଉତ୍ତାରୁ ଶୈବମତର ଉନ୍ନତ ହୋଇଥିଲା । ଶଙ୍କରାଚାର୍ଯ୍ୟଙ୍କ ଶିଷ୍ୟମାନେ ଭାରତର ନାନା ସ୍ଥାନରେ ଶୈବମତ ପ୍ରଚାର କରିଥିଲେ । ଏହି ସମୟରେ ଓଡ଼ିଶାରେ ବୌଦ୍ଧଧର୍ମର ପରିବର୍ତ୍ତରେ ଶୈବମତର ବହୁଳ ପ୍ରଚାର ଘଟିଥିଲା । ଓଡ଼ିଶାର କେଶରୀବଂଶୀୟ ରାଜାମାନେ ଶୈବମତାବଲମ୍ବୀ ଥିଲେ । ଏକାଦଶ ଶତାବ୍ଦୀରେ ବୈଷ୍ଣବମତର ଅଧିକ ବୃଦ୍ଧି ଲଭିଥିଲା । ରାମାନୁଜ ବୈଷ୍ଣବ ପ୍ରଚାରକମାନଙ୍କ ମଧ୍ୟରେ ପ୍ରଥମ ଅଟନ୍ତି । ସେ ଦ୍ୱାଦଶ ଶତାବ୍ଦୀରେ ଦାକ୍ଷିଣାତ୍ୟରେ ବ୍ରାହ୍ମଣକୁଳରେ ଜନ୍ମଗ୍ରହଣ କରିଥିଲେ । ସେ ଜୀବିତ ଥିବା କାଳରେ ୭୦୦ ବୈଷ୍ଣବମଠ ସ୍ଥାପିତ ହୋଇଥିଲା । ତାହାଙ୍କ ଯତ୍ନରେ ବୈଷ୍ଣବମତ ବହୁଦୂର ବ୍ୟାପ୍ତ ହୋଇଥିଲା । ସେ ସବୁ ଜାତିର ଲୋକଙ୍କୁ ଉକ୍ତ ମତରେ ଦୀକ୍ଷିତ କରୁଥିଲେ ।

ସମ୍ବନ୍ଦ ଓ ମାନିକ୍ ବାସଗର :—ଏହି ଦୁଇ ବ୍ୟକ୍ତି ତାମିଲ କବି ଥିଲେ । ତାମିଲଭାଷାରେ ଏମାନଙ୍କ ରଚିତ ସ୍ତୋତ୍ରମାନଙ୍କ ଦ୍ୱାରା ଦାକ୍ଷିଣାତ୍ୟରୁ ବୌଦ୍ଧଧର୍ମର ପ୍ରାଦୁର୍ଭାବ ଅନେକ ପରିମାଣରେ କଟିଯାଇଥିଲା ଏବଂ ଶୈବମତ ଉନ୍ନତ ଲାଭ କରିଥିଲା ।

# ପଠାଣ ରାଜତ୍ୱ ।

## ପଠାଣମାନଙ୍କ ଶାସନରେ ରାଜନୈତିକ ଅବସ୍ଥା ।

କୁତବୁଦ୍ଦିନ ଦିଲ୍ଲୀର ସମ୍ରାଟ୍ ହେବା ଦିନଠାରୁ ଭାରତରେ ଏକ ନବ-ଯୁଗର ଆରମ୍ଭ ହୋଇଥିଲା । ପଠାଣମାନେ ଭାରତରେ ବାସ କରିବାକୁ ଲାଗିଲେ । ଏହାଦ୍ୱାରା ଭାରତର ରାଜନୈତିକ ଓ ସାମାଜିକ ଅବସ୍ଥାରେ ଅନେକ ପରିବର୍ତ୍ତନ ଘଟିଥିଲା । ପଠାଣମାନେ ୩୦୦ ବର୍ଷକାଳ ଏହି ଦେଶ ଶାସନ କରିଥିଲେ ।

ପୂର୍ବେ କୁହାଯାଇଅଛି ଯେ, ମହମ୍ମଦଘୋରୀ ୧୧୯୩ ରେ ପୃଥ୍ୱୀ-ରାଜଙ୍କୁ ପରାସ୍ତ କରି ପଠାଣସାମ୍ରାଜ୍ୟର ପତ୍ତନ ଆରମ୍ଭ କଲେ ଏବ ତାଙ୍କ ଅନ୍ତେ ତାଙ୍କ ପ୍ରତିନିଧି କୁତବୁଦ୍ଦିନ ଆପଣାକୁ ଭାରତର ସମ୍ରାଟ ବୋଲି ଘୋଷଣା କଲେ (୧୨୦୬) । ସେ ଯେତେବେଳେ ସମ୍ରାଟ ହେଲେ ତେତେବେଳେ ପଞ୍ଜାବ, ଦିଲ୍ଲୀ, କାଳଞ୍ଜର, କାନ୍ୟକୁବ୍ଜ, ମଗଧ ଓ ବଙ୍ଗ ତାହାଙ୍କ ଅଧିକାରରେ ଥିଲା ।

ଦାସବଂଶୀୟ ରାଜାମାନଙ୍କର ଶାସନ, ୧୨୦୬-୧୨୯୦:—କୁତ୍‌ବୁଦ୍ଦିନ ଏହି ବଂଶର ସ୍ଥାପନକର୍ତ୍ତା । ସେ ନିଜେ ଓ ଏହି ବଂଶର ଅନେକ ସମ୍ରାଟ୍ ଦାସ ଥିବାରୁ ଏହି ବଂଶକୁ ଦାସବଂଶ କୁହାଯାଏ । ଅଲ୍‌ତାମସ୍ ଏହି ବଂଶର ପ୍ରସିଦ୍ଧ ରାଜା ଥିଲେ । ସେ ୧୨୨୮ ରେ ସିନ୍ଧୁପ୍ରଦେଶକୁ ପଠାଣ-ରାଜ୍ୟଭୁକ୍ତ କରିଥିଲେ । ଏହାଙ୍କ ସମୟରୁ ମୋଗଲମାନେ ଭାରତ ଆକ୍ରମଣ କରିବାକୁ ଆରମ୍ଭ କଲେ । ନାସିରୁଦ୍ଦିନଙ୍କ ସମୟରେ ମାଳବ ଦେଶ ବଶ୍ୟତା ସ୍ୱୀକାର କରିଥିଲା, ଏବ ମିବାରର ରାଜପୁତମାନେ ବିଦ୍ରୋହୀ ହୋଇ ପରାଜିତ ହୋଇଥିଲେ । ବୁଲ୍‌ବନଙ୍କ ସମୟରେ ବଙ୍ଗଳାର ଶାସନକର୍ତ୍ତା ତୁଗ୍ରଲଖାଁ ବିଦ୍ରୋହୀ ହୋଇ ପରାଜିତ ଓ ନିହତ ହୋଇଥିଲେ । ଏହି ବଂଶର ଶେଷ ସମ୍ରାଟ୍ କାଇକୋବାଦଙ୍କୁ ତାଙ୍କର ମନ୍ତ୍ରୀ ଜେଲାଲ୍‌ଉଦ୍ଦିନ ଖିଲ୍‌ଜି ହତ୍ୟା କରି ସ୍ୱୟଂ ସମ୍ରାଟ୍ ହେଲେ ।

ଖିଲ୍ଜିବଂଶୀୟ ରାଜାମାନଙ୍କ ଶାସନ, ୧୨୯୦-୧୩୨୦ :—ଜେଲାଲ୍-ଉଦ୍ଦିନ ଖିଲ୍ଜି ଏହି ବଂଶର ସ୍ଥାପନକର୍ତ୍ତା । ଏହାଙ୍କ ଅମଳରେ ପଠାଣ-ମାନେ ଦାକ୍ଷିଣାତ୍ୟ ଆକ୍ରମଣ କରିବାକୁ ଆରମ୍ଭ କଲେ । ଏହାଙ୍କ ଭ୍ରାତୁ-ଷ୍ପୁତ୍ର ଅଲ୍ଲାଉଦ୍ଦିନ ପୂର୍ବ ମାଳବ ଅଧିକାର କରି ମହାରାଷ୍ଟ୍ର ପ୍ରଦେଶର ଦେବଗିରି ଯାଦବମାନଙ୍କୁ ପରାସ୍ତ କରିଥିଲେ । ସେ ସେମାନଙ୍କଠାରୁ ଏଲିଚ୍‌ପୁର ନଗର ଏବଂ ପ୍ରଚୁର ଅର୍ଥ ନେଇଥିଲେ । ଅଲ୍ଲାଉଦ୍ଦିନ ସମ୍ରାଟ୍ ହୋଇ ୧୨୯୭ରେ ଗୁଜରାଟକୁ ନିଜ ରାଜ୍ୟଭୁକ୍ତ କଲେ । ସେ ୧୩୦୩ରେ ଚିତୋର ଦୁର୍ଗ ଅଧିକାର କରିଥିଲେ । ମାଳବପ୍ରଦେଶ ମଧ୍ୟ ପଠାଣ-ରାଜ୍ୟଭୁକ୍ତ ହେଲା । ସେ ଏହିରୂପେ ଉତ୍ତର-ଭାରତବର୍ଷ ସମ୍ପୂର୍ଣ୍ଣରୂପେ ଅଧିକୃତ କରି ଦାକ୍ଷିଣାତ୍ୟ ଜୟ କରିବାକୁ ବାହାରିଲେ । ତାଙ୍କ ସେନାପତି ମାଲିକ୍ କାଫୁର ୧୩୦୭ରେ ଦେବଗିରିର ଯାଦବରାଜ୍ୟ ଆକ୍ରମଣ କରି-ଥିଲେ । ସେଠାର ରାଜା ବଶ୍ୟତା ସ୍ୱୀକାର କରି କରଦରାଜା ହୋଇ ରହିଲେ । ତତ୍ପରେ ସେ ୱାରଙ୍ଗଲର କାକତୀୟମାନଙ୍କୁ ଏବଂ ଦ୍ୱାର-ସମୁଦ୍ରର ହୟଶାଲା ଯାଦବମାନଙ୍କୁ ପରାସ୍ତ କରି ଦିଲ୍ଲୀସମ୍ରାଟଙ୍କ ଅଧୀନ ଆଣିଥିଲେ । ଏହିପରି ବିନ୍ଧ୍ୟପର୍ବତଠାରୁ କୁମାରିକା ପର୍ଯ୍ୟନ୍ତ ପ୍ରାୟ ସମସ୍ତ ଦେଶ ପଠାଣସମ୍ରାଟଙ୍କ ବଶ୍ୟତା ସ୍ୱୀକାର କଲା (୧୩୧୧) । ଅଲ୍ଲା-ଉଦ୍ଦିନଙ୍କ ସମୟରେ ମୋଗଲମାନେ ଭାରତ ଆକ୍ରମଣ କରି ଅକୃତକାର୍ଯ୍ୟ ହୋଇଥିଲେ । ଏହାଙ୍କ ଶେଷାବସ୍ଥାରେ ଗୁଜରାଟ ବିଦ୍ରୋହୀ ହୋଇଥିଲା । ରାଜପୁତମାନେ ପୁନର୍ବାର ଚିତୋର ଅଧିକାର କରି ନେଇଥିଲେ । ପଠାଣ ସୈନ୍ୟମାନେ ମହାରାଷ୍ଟ୍ର ରାଜ୍ୟରୁ ବିତାଡ଼ିତ ହୋଇଥିଲେ । ତାଙ୍କ ପୁତ୍ର ମୁବାରକ ଗୁଜରାଟ ଓ ମହାରାଷ୍ଟ୍ର ଦେଶର ବିଦ୍ରୋହ ଦମନ କରିଥିଲେ, କିନ୍ତୁ ତାଙ୍କର ଉଜିର ଖସ୍ରୁ ତାହାଙ୍କୁ ହତ୍ୟା କରିବାରୁ ଏହି ବଂଶ ଲୋପ ପାଇଥିଲା ।

ତୋଗଲକ୍‌ବଂଶୀୟ ରାଜାମାନଙ୍କର ଶାସନ, ୧୩୨୦-୧୪୧୨ :—

ପଞ୍ଜାବର ଶାସନକର୍ତ୍ତା ଗିୟାସ୍‌ଉଦ୍ଦିନ ତୋଗଲକ୍ ଖସ୍ରୁଙ୍କୁ ହତ୍ୟା କରି ଦିଲ୍ଲୀର ସମ୍ରାଟ୍ ହେଲେ । ମହମ୍ମଦ ତୋଗଲକ୍ ଏହି ବଂଶର ପ୍ରସିଦ୍ଧ ସମ୍ରାଟ୍ ଥିଲେ । ଏହାଙ୍କ ଅମଳରୁ ପଠାଣରାଜ୍ୟର ପତନ ଆରମ୍ଭ ହେଲା । ସେ ଅତ୍ୟନ୍ତ ଅତ୍ୟାଚାରୀ ଓ ଅଦୂରଦର୍ଶୀ ଲୋକ ଥିଲେ । ଏକ ପ୍ରଦେଶପରେ ଅନ୍ୟ ଏକ ପ୍ରଦେଶ ବିଦ୍ରୋହୀ ହୋଇ ସ୍ୱାଧୀନ ହେବାକୁ ଲାଗିଲା । ପୂର୍ବ-ବଙ୍ଗଳା ୧୩୩୮ ରେ ଏବଂ ପଶ୍ଚିମବଙ୍ଗଳା ୧୩୩୯ ରେ ସ୍ୱାଧୀନ ହେଲା । ଦାକ୍ଷିଣାତ୍ୟରେ କୃଷ୍ଣାନଦୀର ଦକ୍ଷିଣ ପାର୍ଶ୍ୱରେ ହିନ୍ଦୁରାଜ୍ୟମାନଙ୍କର ଧ୍ୱଂସାବଶେଷୋପରି ବିଜୟନଗର ନାମକ ଆଉ ଏକ ପରାକ୍ରମଶାଳୀ ହିନ୍ଦୁରାଜ୍ୟ ସ୍ଥାପିତ ହେଲା ଏବଂ କୃଷ୍ଣାନଦୀର ଉତ୍ତରରେ ବାହ୍ମନୀରାଜ୍ୟ ନାମକ ଏକ ପଠାଣରାଜ୍ୟ ସ୍ଥାପିତ ହୋଇଥିଲା (୧୩୪୭) ।

ଏହାଙ୍କ ଅନ୍ତେ ଫିରୋଜତୋଗଲକ୍ ସମ୍ରାଟ୍ ହୋଇ ପତନଶୀଳ ସାମ୍ରାଜ୍ୟକୁ ରକ୍ଷା କରିବାଲାଗି ବିଶେଷ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ । ବଙ୍ଗଳା ଏବଂ ଦାକ୍ଷିଣାତ୍ୟ ସମ୍ପୂର୍ଣ୍ଣ ସ୍ୱାଧୀନ ହେଲା । ବର୍ତ୍ତମାନ ଉତ୍ତର-ଭାରତରେ ବଙ୍ଗଳାର ପଶ୍ଚିମଠାରୁ ପଞ୍ଜାବ ପର୍ଯ୍ୟନ୍ତ ଦେଶମାତ୍ର ପଠାଣ ସମ୍ରାଜ୍ୟର ଅଧୀନ ଥିଲା ।

ମାମୁଦତୋଗଲକଙ୍କ ଅମଳରେ ପଠାଣସାମ୍ରାଜ୍ୟ ଗୋଟିଏ କ୍ଷୁଦ୍ର ରାଜ୍ୟରେ ପରିଣତ ହୋଇଥିଲା । କାନ୍ୟକୁବ୍ଜ, ଅଯୋଧ୍ୟା ଓ ଅନ୍ୟାନ୍ୟ ପୂର୍ବପ୍ରଦେଶୀୟ ଶାସନକର୍ତ୍ତାମାନେ ବିଦ୍ରୋହୀ ହୋଇ ଜୌନପୁରକୁ ରାଜଧାନୀ କରି ଅଉ ଏକ ନୂଆ ରାଜ୍ୟ ସ୍ଥାପନ କଲେ (୧୩୯୪) । ୧୩୯୬ ରେ ଗୁଜରାଟ, ୧୩୯୯ ରେ ଖାନ୍ଦେଶ, ୧୪୦୧ ରେ ମାଳବ ସ୍ୱାଧୀନ ହେଲା । ଏହାପରେ ଅଳ୍ପଦିନମଧ୍ୟରେ ପ୍ରକାଣ୍ଡ ପଠାଣ-ସାମ୍ରାଜ୍ୟ ଗୋଟିଏ ଅତି କ୍ଷୁଦ୍ର ରାଜ୍ୟରେ ପରିଣତ ହୋଇ ଦିଲ୍ଲୀ ଓ ତନ୍ନିକଟବର୍ତ୍ତୀ ସ୍ଥାନମାନଙ୍କରେ ଅବଦ୍ଧ ରହିଲା । ଏହି ସମୟରେ ତୈମୁର

ନାମକ ଏକ ମୋଗଲ ଭାରତକୁ ଆସି ପଠାଣରାଜ୍ୟର ଆଉ ଯାହା କଣ ବାକି ଥିଲା ତାହା ଧ୍ୱଂସ କରିଦେଇଥିଲେ (୧୩୯୮) । ତୈମୁରଙ୍କ ଯିବା-ପରେ ମାମୁଦ କେବଳ ନାମକୁ ମାତ୍ର ସମ୍ରାଟ୍ ହୋଇ ଦିଲ୍ଲୀସିଂହାସନରେ ବସିରହିଥିଲେ ।

ଭାରତର ତତ୍କାଳୀନ ସ୍ୱାଧୀନ ରାଜ୍ୟସମୂହ:—ପଠାଣସାମ୍ରାଜ୍ୟର ଧ୍ୱଂସ ସମ୍ପୂର୍ଣ୍ଣ ହୋଇଥିଲା । ଦିଲ୍ଲୀଛଡ଼ା ଆଉ କୌଣସି ସ୍ଥାନ ସମ୍ରାଟଙ୍କ ଅଧୀନ ନ ଥିଲା । ଉତ୍ତର ଓ ଦକ୍ଷିଣ ଭାରତରେ ଛୋଟ ବଡ଼ ହିନ୍ଦୁ ଓ ମୁସଲମାନ ରାଜ୍ୟମାନ ସ୍ଥାପିତ ହୋଇଥିଲା । ଉତ୍ତର-ଭାରତର କାଶ୍ମୀର, ସିନ୍ଧୁ, ମାଳବ, ଗୁଜରାଟ, ଜୌନପୁର, ବଙ୍ଗଳା ଓ ଅନ୍ୟାନ୍ୟ ପ୍ରଦେଶରେ ରାଜପୁତ-ମାନେ ରାଜତ୍ୱ କରୁଥିଲେ । ଦାକ୍ଷିଣାତ୍ୟରେ ବିଜୟନଗର ଓ ବାହ୍ମନୀ ନାମକ ଦୁଇଗୋଟି ପ୍ରସିଦ୍ଧ ରାଜ୍ୟ ସ୍ଥାପିତ ହୋଇଥିଲା । ବାହ୍ମନୀରାଜ୍ୟ ହାସାନଙ୍କ ଦ୍ୱାରା ଏବଂ ବିଜୟନଗରରାଜ୍ୟ ବୁକ୍କାନାମକ ଏକ ବ୍ୟକ୍ତିଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ବାହ୍ମନୀରାଜ୍ୟ ବିନ୍ଧ୍ୟପର୍ବତଠାରୁ କୃଷ୍ଣା ଏବଂ ତୁଙ୍ଗଭଦ୍ରା ନଦୀ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା ।

ଦକ୍ଷିଣାତ୍ୟରେ ଏହା ଛଡ଼ା ଖାନ୍ଦେଶ ନାମକ ଆଉ ଗୋଟିଏ ସ୍ୱାଧୀନ ରାଜ୍ୟ ବିଦ୍ୟମାନ ଥିଲା । ଗଙ୍ଗବଂଶୀୟ ରାଜାମାନେ ଓଡ଼ିଶାରେ ସ୍ୱାଧୀନ-ଭାବରେ ରାଜତ୍ୱ କରୁଥିଲେ ଏବଂ ପରାକ୍ରମୀ ହୋଇ ବଙ୍ଗଳା ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ ।

ପଠାଣସାମ୍ରାଜ୍ୟ କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ରାଜ୍ୟରେ ବିଭକ୍ତ ହେବାରୁ ଫଳ ଏହି ହେଲା ଯେ, ଏହି ରାଜ୍ୟମାନଙ୍କ ମଧ୍ୟରେ କଳହ ଆରମ୍ଭ ହୋଇଥିଲା ଏବଂ ଉତ୍ତର ଓ ଦକ୍ଷିଣ ଭାରତରେ ଘୋର ପରିବର୍ତ୍ତନ ଘଟିଥିଲା ।

ପଠାଣସାମ୍ରାଜ୍ୟର ପତନ ଏବଂ ସୈୟଦ ଓ ଲୋଦୀ-ବଂଶୀୟ ରାଜା-ମାନଙ୍କ ଶାସନ (୧୪୧୪-୧୫୨୬):—ମାମୁଦ ତୋଗଲକଙ୍କ ଅନ୍ତେ

ଦୌଲତଖାଁ ଲୋଦୀ ନାମକ ଏକ ବ୍ୟକ୍ତି ଦିଲ୍ଲୀ ଅଧିକାର କଲେ । କିନ୍ତୁ ମୁଲତାନର ଶାସନକର୍ତ୍ତା ଖିଜରଖାଁ ତାଙ୍କୁ ତଡ଼ିଦେଇ ୧୪୧୪ ରେ ଦିଲ୍ଲୀ ଛଡ଼ାଇନେଲେ । ସେ ସୈୟଦବଂଶର ସ୍ଥାପନକର୍ତ୍ତା । ଏହି ବଂଶ ୧୪୫୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲା । ତହିଁପରେ ବହ୍ଲୋଲଲୋଦୀ ଦିଲ୍ଲୀ ଅଧିକାର କଲେ । ସେ ୨୬ ବର୍ଷ ଯୁଦ୍ଧ କରି ଜୋନପୁର ରାଜ୍ୟ ନିଜ ରାଜ୍ୟର ସାମିଲ କରିଥିଲେ । ଏହାଙ୍କ ପୁତ୍ର ସିକନ୍ଦର ବିହାର ଜୟ କରିଥିଲେ । ସେ ଏହିରୂପେ ଉତ୍ତର-ଭାରତରେ ସାମ୍ରାଜ୍ୟ ସ୍ଥାପନ କରିବାରେ କମ୍ବହିପରିମାଣରେ କୃତକାର୍ଯ୍ୟ ହୋଇଥିଲେ । ତାଙ୍କପରେ ଇବ୍ରାହିମ ଲୋଦୀ ସମ୍ରାଟ୍ ହେଲେ । ସେ ଅତ୍ୟନ୍ତ ଅତ୍ୟାଚାରୀ ଓ ଦୁର୍ବଳ ରାଜା ଥିଲେ । ଜୋନପୁର ସ୍ୱାଧୀନ ହେଲା । ପଞ୍ଜାବର ଶାସନକର୍ତ୍ତା ଦୌଲତଖାଁଲୋଦୀ କାବୁଲର ମୋଗଲ ସୁଲତାନ ବାବରଙ୍କୁ ଭାରତ ଆକ୍ରମଣ କରିବାଲାଗି ଡାକିଥିଲେ ।

**ପାନିପଥ ଏବଂ ଶିକ୍ରି ଯୁଦ୍ଧ**:—ବାବର ଓ ଇବ୍ରାହିମ ଲୋଦୀଙ୍କ ମଧ୍ୟରେ ପାନିପଥଠାରେ ଏକ ଯୁଦ୍ଧ ହେଲା (୧୫୨୬) । ଇବ୍ରାହିମ ପରାଜିତ ଓ ହତ ହେଲେ ଏବଂ ମୋଗଲସାମ୍ରାଜ୍ୟର ପତ୍ତନ ଆରମ୍ଭ ହେଲା । ମିବାରର ରାଣା ସଂଗ୍ରାମସିଂହ ଏହି ଯୁଦ୍ଧରେ ବାବରଙ୍କୁ ସାହାଯ୍ୟ କରିଥିଲେ । ସେ ଯେତେବେଳେ ଦେଖିଲେ ଯେ, ବାବର ଆଉ ଦିଲ୍ଲୀ ପରିତ୍ୟାଗ କରି ଯାଉନାହାନ୍ତି ସେତେବେଳେ ସେ ବାବରଙ୍କୁ ତଡ଼ିଦେବା ସକାଶେ ଚେଷ୍ଟା କଲେ । ଶିକ୍ରିଠାରେ ଯୁଦ୍ଧ ହେଲା (୧୫୨୭) । ସଂଗ୍ରାମସିଂହ ପରାଜିତ ଓ ନିହତ ହେଲେ । ବାବର ନିଶ୍ଚିନ୍ତ ହୋଇ ଦିଲ୍ଲୀର ସମ୍ରାଟ ହେଲେ ।

**ଦାକ୍ଷିଣାତ୍ୟରେ ପରିବର୍ତ୍ତନ**:—ଉତ୍ତର-ଭାରତରେ ଯେତେବେଳେ ଏହିପରି ପରିବର୍ତ୍ତନ ଘଟୁଥିଲା, ଦାକ୍ଷିଣାତ୍ୟରେ ମଧ୍ୟ ତଦ୍ରୂପ ଘଟିଥିଲା ।

ବାହ୍ମନବାଜ୍ୟ ସର୍ବଦା ବିଜୟ୍ ନଗର ରାଜ୍ୟସହ ଯୁଦ୍ଧରେ ବ୍ୟାପୃତ ଥିଲା, ମାତ୍ର ଅବଶେଷରେ ଗୃହବିବାଦରେ ଧ୍ୱଂସପ୍ରାପ୍ତ ହେଲା ।

ଯେତେବେଳେ ବାବର ଭାରତ ଆକ୍ରମଣ କଲେ, ତେତେବେଳେ ବାହ୍ମନରାଜ୍ୟ ଧ୍ୱଂସପ୍ରାପ୍ତ ହୋଇ ସେଥିରୁ ଆଉ ପଞ୍ଚଗୋଟି ସ୍ୱାଧୀନ ରାଜ୍ୟ ଜାତ ହୋଇଥିଲା, ଯଥା—ଅଦଲସାହଙ୍କ ଦ୍ୱାରା ସ୍ଥାପିତ ବିଜାପୁର ରାଜ୍ୟ, ଇମାଦସାହଙ୍କ ଦ୍ୱାରା ସ୍ଥାପିତ ବେରାର ରାଜ୍ୟ, ଅହମ୍ମଦସାହଙ୍କ ଦ୍ୱାରା ସ୍ଥାପିତ ଅହମ୍ମଦ ନଗର ରାଜ୍ୟ, କୁତବ୍ ଉଲ୍‌ମୁଲ୍‌କ ଦ୍ୱାରା ସ୍ଥାପିତ ଗୋଲକୁଣ୍ଡା ରାଜ୍ୟ, କାସିମ୍‌ବରିଦ୍ ଦ୍ୱାରା ସ୍ଥାପିତ ବଦର ରାଜ୍ୟ ।

---

## ପଠାଣସାମ୍ରାଜ୍ୟର ଆରମ୍ଭଠାରୁ ମୋଗଲସାମ୍ରାଜ୍ୟ ସ୍ଥାପନ ପର୍ଯ୍ୟନ୍ତ ସାମାଜିକ ଅବସ୍ଥା ।

ପଠାଣମାନେ ଭାରତ ଜୟ କରିବାରୁ ଭାରତରେ ହିନ୍ଦୁମାନଙ୍କର ରାଜ୍ୟୀୟ ଏବଂ ସାମାଜିକ ଜୀବନରେ ଘୋର ବିପ୍ଳବ ଘଟିଥିଲା । ମହମ୍ମଦ-ଘୋରୀଙ୍କ ଭାରତବିଜୟ ପୂର୍ବେ ପଠାଣମାନେ ଭାରତକୁ ଆସି କେବଳ ଲୁଟପାଟ କରି ଚାଲିଯାଉଥିଲେ । କିନ୍ତୁ ତାହାଙ୍କ ବିଜୟପରେ ସେମାନେ ଭାରତରେ ବାସ କରି ଭାରତର ଲୋକ ହେଲେ ।

ପଠାଣରାଜାମାନଙ୍କର ନିଜ ଦେଶ ସଙ୍ଗେ କୌଣସି ପ୍ରକାର ସଂସ୍ରବ ନ ଥିଲା । ସେମାନଙ୍କୁ ଭାରତୀୟ ରାଜା ବୋଲି କୁହାଯାଇପାରେ । ଭାରତ ଜୟକରି ପଠାଣମାନେ ହିନ୍ଦୁମାନଙ୍କୁ ନିଜ ଧର୍ମରେ ଦୀକ୍ଷିତ କରିବାକୁ ଆରମ୍ଭ କରିଥିଲେ ।

ପଠାଣ ସାମ୍ରାଜ୍ୟ ସ୍ଥାପିତ ହେଲା ଉତ୍ତାରୁ ହିନ୍ଦୁସମାଜ ଆଉ ମୁସଲମାନସମାଜ ପାଖେ ପାଖେ ରହିଲା ଏବଂ ପ୍ରତ୍ୟେକ ସମାଜ ଅନ୍ୟ ଉପରେ କ୍ଷମତା ବିସ୍ତାର କରିବାକୁ ଲାଗିଲା । ପଠାଣମାନଙ୍କ ହାତରେ ରାଜଶକ୍ତି ଥିବାରୁ ସେମାନେ ହିନ୍ଦୁମାନଙ୍କୁ ନିଜ ଧର୍ମରେ ଦୀକ୍ଷିତ

କରିବାଲାଗି ଚେଷ୍ଟା କଲେ । ଫଳ ଏହି ହେଲା ଯେ, ଉତ୍ତରପଶ୍ଚିମ ପ୍ରଦେଶ ଓ ବଙ୍ଗଳାର ଅନେକ ନୀଚଜାତୀୟ ଲୋକ ମୁସଲମାନଧର୍ମ ଗ୍ରହଣ କଲେ କିନ୍ତୁ ଅଧିକାଂଶ ହିନ୍ଦୁ ନିଜ ଧର୍ମ ତ୍ୟାଗ କରି ନ ଥିଲେ । କ୍ରମେ କ୍ରମେ ମୁସଲମାନମାନଙ୍କର ହିନ୍ଦୁମାନଙ୍କୁ ଧର୍ମରେ ଦୀକ୍ଷିତ କରିବାର ଜିଦ୍ କମିଗଲା, ଏବଂ ହିନ୍ଦୁ ଓ ମୁସଲମାନ ମିତ୍ରଭାବରେ ବାସ କରିବାକୁ ଆରମ୍ଭ କଲେ । ଯେତେବେଳେ ପଠାଣସାମ୍ରାଜ୍ୟ ଧ୍ୱଂସପ୍ରାପ୍ତ ହୋଇ ଅନେକ ସ୍ୱାଧୀନ ମୁସଲମାନରାଜ୍ୟ ସ୍ଥାପିତ ହୋଇଥିଲା ଏବଂ ମୁସଲମାନ ରାଜାମାନେ ହିନ୍ଦୁମାନଙ୍କ ଉପରେ ରାଜ୍ୟଶାସନର ଭାର ଦେଇଥିଲେ, ସେତେବେଳେ ହିନ୍ଦୁ ଓ ମୁସଲମାନ ମଧ୍ୟରେ ବିରୋଧ ଆଦୌ ନ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏକ ଅନ୍ୟର ଆଚାର, ବ୍ୟବହାର, ରୀତି, ନୀତି ଅନୁକରଣ କରିବାକୁ ଲାଗିଲେ ଏବଂ ସେମାନଙ୍କ ମଧ୍ୟରେ ବିବାହସମ୍ବନ୍ଧ ମଧ୍ୟ ସ୍ଥାପିତ ହୋଇଥିଲା ।

ସ୍ମୃତି ଓ ହିନ୍ଦୁ ସନ୍ନ୍ୟାସୀ:—ଯେତେବେଳେ ବ୍ରାହ୍ମଣମାନେ ଦେଖିଲେ ଯେ ମୁଲ୍ଲା, ପୀର ଏବଂ ଫକୀରମାନେ ହିନ୍ଦୁମାନଙ୍କୁ ନବଧର୍ମରେ ଦୀକ୍ଷିତ କରିବାରେ ଲାଗିଅଛନ୍ତି କିନ୍ତୁ ସ୍ୱଧର୍ମ ରକ୍ଷା କରିବାଲାଗି ହିନ୍ଦୁମାନଙ୍କ ମଧ୍ୟରେ କେହି କ୍ଷମତାଶାଳୀ ରାଜା ନାହିଁ । ସେତେବେଳେ ସେମାନେ ସମାଜ ପରିଚାଳନ ବିଷୟରେ କଠୋର ନିୟମମାନ ଲିପିବଦ୍ଧ କରି ଗ୍ରନ୍ଥସମୂହ ଲେଖିବାକୁ ବସିଲେ । ଏହି ଗ୍ରନ୍ଥମାନଙ୍କୁ ନବ୍ୟ ସ୍ମୃତି କୁହାଯାଏ । ମାଧବାଚାର୍ଯ୍ୟ, ଶମ୍ଭୂକର, ବାଚସ୍ପତି ଏବଂ ରଘୁନନ୍ଦନ ଏହି ଶ୍ରେଣୀୟ ସ୍ମୃତି-ଲେଖକମାନଙ୍କ ମଧ୍ୟରେ ପ୍ରଧାନ ।

ଏଥିପୂର୍ବେ ନୀଚଜାତୀୟ ହିନ୍ଦୁମାନେ ବ୍ରାହ୍ମଣମାନଙ୍କର ଧର୍ମୋପଦେଶ ପାଇପାରୁ ନ ଥିଲେ । ତେଣୁ ସେମାନଙ୍କ ମଧ୍ୟରୁ ଅନେକେ ମୁସଲମାନ ହୋଇଗଲେ । ଏହା ଦେଖି କେତେକଜଣ ସନ୍ନ୍ୟାସୀ-ସଂସ୍କାରକ ଜାତିଭେଦ ନ ମାନି ସମସ୍ତଙ୍କୁ ଧର୍ମୋପଦେଶ ଦେବାକୁ

ଆରମ୍ଭ କରିଥିଲେ । ସେମାନଙ୍କ ମଧ୍ୟରେ ବିଖ୍ୟାତ କେତେକ ଧର୍ମପ୍ରଚାରକଙ୍କ ବିବରଣ ତଳେ ଦିଆଗଲା ।

ରାମାନୁଜ :—ବୈଷ୍ଣବ ସଂସ୍କାରକମାନଙ୍କ ମଧ୍ୟରେ ଏହି ମହାପୁରୁଷ ସର୍ବପ୍ରଥମ । ସେ ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ଆପଣାର ମତ ଦେଶର ଦକ୍ଷିଣରେ ପ୍ରଚାର କରିଥିଲେ । ସେଠାରୁ ସେ ସେ ଦେଶର ରାଜାଙ୍କ ଭୟରେ ପଳାଇଯାଇ ମହୀସୁରର ଜୈନ ରାଜାଙ୍କୁ ସ୍ୱମତରେ ଦୀକ୍ଷିତ କରିଥିଲେ । ସେ ତାହାଙ୍କର ମୃତ୍ୟୁ ପୂର୍ବରୁ ୭୦୦ ମଠ ସ୍ଥାପନ କରି ଯାଇଥିଲେ ।

ରାମାନନ୍ଦ :—୧୪ଶ ଶତାବ୍ଦୀର ସନ୍ନ୍ୟାସୀ ପ୍ରଚାରକ ମଧ୍ୟରେ ରାମାନନ୍ଦ ପ୍ରଧାନ ଥିଲେ । ସେ ଉତ୍ତର-ଭାରତର ସମସ୍ତ ସ୍ଥାନରେ ଭ୍ରମଣ କରି ବୈଷ୍ଣବ ମତ ପ୍ରଚାର କରିଥିଲେ । ସେ ନୀଚଜାତୀୟ ହିନ୍ଦୁ ମଧ୍ୟରୁ ଶିଷ୍ୟ ଗ୍ରହଣ କରୁଥିଲେ ।

କବୀର :—କବୀର ଜାତିରେ ତନ୍ତ୍ରୀ ଥିଲେ । ସେ ରାମାନନ୍ଦଙ୍କ ଶିଷ୍ୟ । ସେ ପଞ୍ଚଦଶ ଶତାବ୍ଦୀରେ ସ୍ୱମତ ପ୍ରଚାର ଆରମ୍ଭ କରି ବୈଷ୍ଣବ ମତରେ ଏତେ ପରିବର୍ତ୍ତନ ଘଟାଇ ଥିଲେ ଯେ, କି ହିନ୍ଦୁ କି ମୁସଲମାନ ସମସ୍ତେ ଏହା ଗ୍ରହଣ କରିପାରିଥିଲେ । ସେ କହୁଥିଲେ ରାମ ଏବଂ ଅଲ୍ଲା ଏକ, କେବଳ ଭାଷାର ବିଭିନ୍ନତାରୁ ଦୁଇ ଶବ୍ଦର ଉତ୍ପତ୍ତି । ତେଣୁ ତାହାଙ୍କ ମୃତ୍ୟୁ ସମୟରେ ତାହାଙ୍କ ମୃତ ଶରୀରକୁ ହିନ୍ଦୁ ଏବଂ ମୁସଲମାନ ଉଭୟ ଦାବି କରିଥିଲେ ।

ନାନକ :—ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ନାନକ ପଞ୍ଜାବରେ ଧର୍ମପ୍ରଚାର କରିଥିଲେ । ତାହାଙ୍କ ପ୍ରଚାରିତ ଧର୍ମକୁ ଶିଖଧର୍ମ କୁହାଯାଏ । ସେ ହିନ୍ଦୁ ଓ ମୁସଲମାନ ଉଭୟଙ୍କୁ ନିଜଧର୍ମରେ ଦୀକ୍ଷିତ କରିଥିଲେ ।

ଚୈତନ୍ୟ ଦେବ :—ସେ ଜଣେ ଉତ୍କଳୀୟ ବ୍ରାହ୍ମଣ ବଙ୍ଗଦେଶର ନବଦ୍ୱୀପରେ ୧୪୮୫ରେ ଜନ୍ମଗ୍ରହଣ କରି ବୈଷ୍ଣବ ମତର ଶ୍ରୀବୃଦ୍ଧି

ସାଧନ କରୁଥିଲେ । ସେ ହିନ୍ଦୁ ଓ ମୁସଲମାନ ଉଭୟଙ୍କୁ ଧର୍ମୋପଦେଶ ପ୍ରଦାନ କରୁଥିଲେ, କାରଣ ତାହାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ନୈଷ୍ଠ ହରିଦାସ ନାମକ ଜଣେ ମୁସଲମାନ ଥିଲେ । ସେ ପୁରୀ ନଗରରେ ଜୀବନର ଅଧିକାଂଶକାଳ କଟାଇ ସେହିଠାରେ ପ୍ରାଣତ୍ୟାଗ କରିଥିଲେ । ବୈଷ୍ଣବମାନେ ତାହାଙ୍କୁ ଈଶ୍ୱରଙ୍କ ଅବତାର ବୋଲି ଜ୍ଞାନ କରନ୍ତି

ଜଗନ୍ନାଥ ଦାସ :—ସେ ଜଣେ ଉତ୍କଳୀୟ ବ୍ରାହ୍ମଣ, ଚୈତନ୍ୟଦେବଙ୍କ ସମସାମୟିକ । ଶ୍ରୀମଦ୍ଭାଗବତକୁ ଉତ୍କଳଭାଷାରେ ଅନୁବାଦ କରି ସେ ତହିଁର ବୈଷ୍ଣବମତ ଜାତିନିର୍ବିଶେଷରେ ପ୍ରଚାର କରିଥିଲେ । ସେ ଉତ୍କଳୀୟ ଅତିବଡ଼ୀ ବୈଷ୍ଣବ ମଣ୍ଡଳୀର ସ୍ଥାପୟିତା । ଜୀବନର ଅଧିକାଂଶ ପୁରୀ ନଗରରେ ଯାପନ କରି ସେହିଠାରେ ଇହଲୀଳା ସାଙ୍ଗ କରିଥିଲେ ।

ପ୍ରାଦେଶିକ ଭାଷାମାନଙ୍କର ଉନ୍ନତି :—ବୈଷ୍ଣବଧର୍ମର ଉତ୍ଥାନ ହେବାରୁ ପ୍ରାଦେଶିକ ଭାଷାମାନଙ୍କର ବିଶେଷ ଉନ୍ନତି ହୋଇଥିଲା । ବ୍ରାହ୍ମଣମାନେ ସଂସ୍କୃତଭାଷାରେ ସୂତ୍ର ଲେଖୁଥିଲେ, କିନ୍ତୁ ସନ୍ୟାସୀ ସଂସ୍କାରକମାନେ ପ୍ରାକୃତଭାଷାରେ ଗ୍ରନ୍ଥମାନ ଲେଖି ଲୋକମାନଙ୍କୁ ଶିକ୍ଷା ଦେଲେ । ରାମାନନ୍ଦ ଓ କବୀରଙ୍କ ଶିଷ୍ୟମାନେ ହିନ୍ଦିଭାଷାର, ଚୈତନ୍ୟଙ୍କ ଶିଷ୍ୟମାନେ ବଙ୍ଗଭାଷାର, ଆଉ ନାନକଙ୍କ ଶିଷ୍ୟମାନେ ପଞ୍ଜାବୀ ଭାଷାର ଉନ୍ନତି କରିଥିଲେ । ବୈଷ୍ଣବକବିମାନଙ୍କ ମଧ୍ୟରେ ବଙ୍ଗଳାରେ ବିଦ୍ୟାପତି ଓ ଚଣ୍ଡୀଦାସ ଏବଂ ଓଡ଼ିଶାରେ ଜଗନ୍ନାଥଦାସ ଓ ବଳରାମଦାସ ପ୍ରସିଦ୍ଧ ଥିଲେ । ଏମାନଙ୍କ ପୂର୍ବରୁ ସାରଳା ଦାସ ନାମକ ଆଉ ଜଣେ କବି ଜନ୍ମଗ୍ରହଣ କରି ଓଡ଼ିଆରେ ମହାଭାରତ ଲେଖିଥିଲେ । ସେ ଜଗନ୍ନାଥଦାସଙ୍କ ପୂର୍ବବର୍ତ୍ତୀ ଏବଂ ତାହାଙ୍କୁ ଓଡ଼ିଆ ସାହିତ୍ୟର ଜନ୍ମଦାତା ବୋଲିଯାଇପାରେ ।

ହିନ୍ଦୁଶାସନ ଓ ହିନ୍ଦୁକ୍ଷମତା :—ମୁସଲମାନମାନେ ରାଜା ହେଲେ ସୁଦ୍ଧା ହିନ୍ଦୁରାଜତ୍ୱକାଳରେ ଦେଶର ଶାସନପ୍ରଣାଳୀ ଯେପରି ଥିଲା ବର୍ତ୍ତମାନ

ମଧ୍ୟ ସେହିପରି ରହିଲା; ଅତି ସାମାନ୍ୟ ପରିବର୍ତ୍ତନ ଘଟିଥିଲା । ପଠାଣ ସମ୍ରାଟ୍‌ମାନେ ଦେଶକୁ ସୈନ୍ୟବଳଦ୍ୱାରା ଅଧୀନ ରଖିଥିଲେ । ଦୁଷ୍ଟ ଲୋକ-ମାନଙ୍କୁ ଦମନକରିବା ଲାଗି ସେମାନେ ବଡ଼ ବଡ଼ ସହରରେ ଏବଂ ଯେଉଁଠାରେ ହିନ୍ଦୁଶକ୍ତି ପ୍ରବଳ ଥିଲା ସେଠାରେ ସୈନ୍ୟ ରଖୁଥିଲେ ଦେଶର ଅବଶିଷ୍ଟାଂଶ ହିନ୍ଦୁମାନଙ୍କ ଶାସନରେ ଥିଲା । ଯେତେଦିନ ପର୍ଯ୍ୟନ୍ତ ଏହି ହିନ୍ଦୁଶାସନକର୍ତ୍ତାମାନେ ନିୟମିତରୂପେ ରାଜସ୍ୱ ଦାଖଲ କରୁଥିଲେ, ସେତେଦିନ ପର୍ଯ୍ୟନ୍ତ ସେମାନେ ନିଶ୍ଚିନ୍ତଭାବରେ ନିଜ ନିଜ ପ୍ରଦେଶ ଶାସନ କରୁଥିଲେ । କିନ୍ତୁ ଯେତେବେଳେ ସେମାନେ ରାଜସ୍ୱ ଦେଇ-ପାରୁ ନ ଥିଲେ କିମ୍ବା ସମ୍ରାଟଙ୍କ ବଶ୍ୟତା ସ୍ୱୀକାର କରୁ ନ ଥିଲେ, ସେତେବେଳେ ସମ୍ରାଟମାନେ ସୈନ୍ୟ ପଠାଇ ସେମାନଙ୍କୁ ଦମନ କରୁ-ଥିଲେ । ଯେତେବେଳେ ହିନ୍ଦୁ ଓ ମୁସଲମାନ ମଧ୍ୟରେ ମୈତ୍ରୀ ଭାବ ଜାତ ହେଲା, ସେତେବେଳେ ହିନ୍ଦୁମାନେ ଅଧିକ ପରିମାଣରେ ଉଚ୍ଚ ଉଚ୍ଚ ରାଜକୀୟ ପଦରେ ନିଯୁକ୍ତ ହେଲେ । ବିଶେଷତଃ ରାଜସ୍ୱ-ଆଦାୟର ଭାର ହିନ୍ଦୁମାନଙ୍କ ଉପରେ ନ୍ୟସ୍ତ ହେଲା ଏବଂ ପଠାଣ-ରାଜାମାନଙ୍କର ଅଧିକାଂଶ ମନ୍ତ୍ରୀ ଓ ସେନାପତି ହିନ୍ଦୁ ହେଲେ ।

ପଠାଣସୈନ୍ୟ :—ପଠାଣସୈନ୍ୟରେ ଭିନ୍ନ ଭିନ୍ନ ଜାତିର ଲୋକ ଥିଲେ । ଦାସବଂଶୀୟ ରାଜଗଣ ଅଫଗାନଜାତିରୁ ସୈନ୍ୟ ଗ୍ରହଣ କରୁ-ଥିଲେ । ଖିଲ୍‌ଜିବଂଶୀୟ ରାଜଗଣଙ୍କ ସୈନ୍ୟରେ ତାତାରଦେଶୀୟ ଲୋକ, ମୁସଲମାନଧର୍ମ-ଦୀକ୍ଷିତ ମୋଗଲ ଓ ହିନ୍ଦୁମାନେ ଅଧିକ ପରିମାଣରେ ନିଯୁକ୍ତ ଥିଲେ । ପଠାଣରାଜାମାନଙ୍କ ଅମଳରେ ମଧ୍ୟଏସିଆବାସୀ ଭିନ୍ନ ଭିନ୍ନ ଜାତିର ଲୋକମାନେ ଭାରତକୁ ଆସି ପଠାଣସୈନ୍ୟରେ ପ୍ରବେଶ ଲାଭ କରିଥିଲେ । ଏମାନଙ୍କର ରାଜଭକ୍ତି ଆଦୌ ନ ଥିଲା । ଏମାନେ ନିଜ ସ୍ୱାର୍ଥ ପାଇଁ ଯେତେବେଳେ ଇଚ୍ଛା ସେତେବେଳେ

ବଦ୍ଧେ ହୋଇଥିଲେ । ଏପରି ବିଭିନ୍ନ ଜାତୀୟ ଲୋକମାନଙ୍କ ଦ୍ୱାରା ଗଠିତ ସୈନ୍ୟଙ୍କୁ କେବଳ ପରାକ୍ରମୀ ସମ୍ରାଟ୍‌ମାନେ ଦମନକରି ରଖିବାକୁ ସମର୍ଥ ହେଉଥିଲେ, ଦୁର୍ବଳ ସମ୍ରାଟ୍‌ମାନଙ୍କୁ ସେମାନେ ଆଦୌ ଗ୍ରାହ୍ୟ କରୁ ନ ଥିଲେ । ଯେତେବେଳେ ମହମ୍ମଦତୋଗଲକଙ୍କ ଦୁର୍ବଳତା ଜଣା-ପଡ଼ିଲା, ପଠାଣସୈନ୍ୟର ନାୟକମାନେ ଉତ୍ପାତ ଆରମ୍ଭ କରି ପଠାଣ-ସାମ୍ରାଜ୍ୟର ଧ୍ୱଂସସାଧନ କରିଥିଲେ ।

ଇଉରୋପୀୟମାନଙ୍କର ଜଳପଥରେ ଭାରତାଗମନ:—ପଠାଣରାଜତ୍ୱର ଶେଷଭାଗରେ ଇଉରୋପର ପର୍ତ୍ତୁଗାଲବାସୀ ପ୍ରସିଦ୍ଧ ନାବିକ ଭାସ୍କୋଡ଼ି-ଗାମା ଉତ୍ତମାଶାଅନ୍ତରୀପ ଆବିଷ୍କାର କରି ଜଳପଥରେ ଭାରତକୁ ଆସିବାର ମାର୍ଗ ଇଉରୋପୀୟମାନଙ୍କୁ ଦେଖାଇଦେଇଥିଲେ (୧୪୯୮ ଖ୍ରୀ: ଅ:) । ସେପର୍ଯ୍ୟନ୍ତ ସମୁଦ୍ରପଥରେ କୌଣସି ଇଉରୋପବାସୀ ଭାରତକୁ ଆସି ନ ଥିଲେ । ୧୫୧୦ ଖ୍ରୀ: ଅବ୍ଦରେ ଯେତେବେଳେ ପର୍ତ୍ତୁଗାଲବାସୀମାନେ ଜଳପଥରେ ଯୁଦ୍ଧଜାହାଜ ନେଇ ଆସି ଗୋଆ-ନଗର ଆକ୍ରମଣ କରି ସ୍ୱ ଅଧିକାରଭୁକ୍ତ କଲେ, ସେତେବେଳେ ଦେଖା-ଗଲା ଯେ, ଯେଉଁ ସମୁଦ୍ର ସେପର୍ଯ୍ୟନ୍ତ ଭାରତକୁ ବାହ୍ୟ ଶତ୍ରୁର ଆକ୍ରମଣରୁ ରକ୍ଷା କରିଆସିଥିଲା ତାହା ମଧ୍ୟ ଏକ ସମୟରେ ନାନା ବିପଦ ଘଟାଇପାରେ ।

---

## ମୋଗଲ ରାଜତ୍ୱ ।

### ମୋଗଲସାମ୍ରାଜ୍ୟ ସ୍ଥାପନଠାରୁ ବ୍ରିଟିଶୀୟ ଶାସନର ମୂଳଭିତ୍ତି ସ୍ଥାପନ ପର୍ଯ୍ୟନ୍ତ ରାଜନୈତିକ ଅବସ୍ଥା ।

ପୂର୍ବେ କୁହାଯାଇଅଛି ଯେ, ବାବର ପଠାଣ ଓ ରାଜପୁତମାନଙ୍କୁ

ପରାକ୍ରମୀକର ମୋଗଲସାମ୍ରାଜ୍ୟର ପତ୍ତନ ଆରମ୍ଭ କରିଥିଲେ । କିନ୍ତୁ ଅଳ୍ପଦିନପରେ ତାଙ୍କର ମୃତ୍ୟୁ ହେବାରୁ ସେ ନବପ୍ରତିଷ୍ଠିତ ସାମ୍ରାଜ୍ୟକୁ ଦୃଢ଼ୀଭୂତ କରିପାରି ନ ଥିଲେ । ତାଙ୍କ ଅନ୍ତେ ତାଙ୍କ ପୁତ୍ର ହୁମାୟୁନ ସମ୍ରାଟ୍ ହେଲେ । ସେ ସମୟରେ ଗୁଜରାଟର ରଜା ବାହାଦୁରସାହ ପରାକ୍ରମୀ ହୋଇ ମାଳବକୁ ନିଜରାଜ୍ୟର ସାମିଲ କଲେ । ଶେରଖାଁ ନାମକ ଏକ ପଠାଣସର୍ଦ୍ଦାର ପୂର୍ବପ୍ରଦେଶମାନଙ୍କରେ ପରାକ୍ରମୀ ହୋଇ-ଥିଲେ । ହୁମାୟୁନ ଶେରଖାଁଙ୍କ ଦ୍ୱାରା କାନ୍ୟକୁବ୍ଜ ଯୁଦ୍ଧରେ ସମ୍ପୂର୍ଣ୍ଣରୂପେ ପରାଜିତ ହୋଇ ଭାରତରୁ ପଳାଇଗଲେ (୧୫୪୦) ।

ମାତ୍ର ପଠାଣରାଜ୍ୟ ବହୁକାଳ ସ୍ଥାୟୀ ହୋଇ ନ ଥିଲା । ଶେରସାହଙ୍କ ଅନ୍ତେ ଗୃହବିବାଦ ଉପସ୍ଥିତ ହେଲା । ହିମୁ ନାମକ ସମ୍ରାଟଙ୍କର ଏକ ପ୍ରିୟପାତ୍ର ପରାକ୍ରମୀ ହୋଇ ନାନା ଅତ୍ୟାଚାର କଲେ । ଏହି ସୁବିଧା ପାଇ ହୁମାୟୁନ କାବୁଲରୁ ଅସି ସିକନ୍ଦର ସୁରଙ୍କୁ ସିରହିନ୍ଦ ଯୁଦ୍ଧରେ ପରାସ୍ତ କରି ଦିଲ୍ଲୀ ଅଧିକାର କରିନେଲେ (୧୫୫୫) । କିନ୍ତୁ ଅଳ୍ପଦିନ ପରେ ହୁମାୟୁନଙ୍କ ମୃତ୍ୟୁ ହେଲା । ହିମୁ ପଠାଣସାମ୍ରାଜ୍ୟ ରକ୍ଷା କରିବା-ଲାଗି ଚେଷ୍ଟା କଲେ । କିନ୍ତୁ ସେ ହୁମାୟୁନଙ୍କ ପୁତ୍ର ଅକବରଙ୍କ କର୍ତ୍ତୃକ ୧୫୫୬ ରେ ୨ୟ ପାନିପଥ ଯୁଦ୍ଧରେ ପରାଜିତ ହେବାରୁ ପଠାଣସାମ୍ରାଜ୍ୟ ପୁନର୍ବାର ଲୋପ ପାଇଲା ।

ମୋଗଲସାମ୍ରାଜ୍ୟ ଓ ଅକବର :—ଅକବର ଦିଲ୍ଲୀ ଅଧିକାର କରିବା ସମୟରେ ତାଙ୍କୁ ୧୪ ବର୍ଷ ମାତ୍ର ବୟସ ହୋଇଥିଲା । ସେ ଚାରିବର୍ଷ ମଧ୍ୟରେ ଅଫଗାନିସ୍ଥାନରୁ ଜୌନପୁର ପର୍ଯ୍ୟନ୍ତ ଚଢ଼ିଦେଇ ନିଜ କର୍ମଚାରୀ-ମାନଙ୍କ ଉପରେ କ୍ଷମତା ଦୃଢ଼ୀଭୂତ କରିବାକୁ ଲାଗିଲେ । ଏହା କରି-ବାକୁ ତାଙ୍କୁ ସାତବର୍ଷ ଲାଗିଥିଲା । ୨୫ ବର୍ଷ ବୟସ ସମୟରେ ସେ ରାଜ୍ୟ ମଧ୍ୟରେ ସମସ୍ତ ବିଦ୍ରୋହ ଓ ଉତ୍ପାତ ନିବାରଣ କରିଥିଲେ ।

ରାଜପୁତମାନଙ୍କ ବଶୀକରଣ—ମିତ୍ରତା ଓ ବିବାହ ସମ୍ବନ୍ଧ ସ୍ଥାପନଦ୍ୱାରା ସେ ରାଜପୁତମାନଙ୍କୁ ବଶ କରିଥିଲେ । ଜୟପୁରର ରାଜା ବିହାରୀମଲ୍ଲଙ୍କ କନ୍ୟାଙ୍କୁ ଅକବର ନିଜେ ବିବାହକଲେ ଏବଂ ତାଙ୍କର ଶ୍ୱଶୁରଙ୍କୁ ଓ ଶଳା ଭଗବାନ ଦାସଙ୍କୁ ଉଚ୍ଚ ରାଜକାର୍ଯ୍ୟ ଦେଲେ । ଅନ୍ୟାନ୍ୟ ରାଜପୁତ ସର୍ଦ୍ଦାରମାନେ ଅକବରଙ୍କ ଅଧୀନରେ ଚାକିରି କରିବାକୁ ଲାଗିଲେ ଏବଂ ଅଳ୍ପଦିନ ମଧ୍ୟରେ ରାଜପୁତନାର ଅଧିକାଂଶ ଅକବରଙ୍କ ବଶରେ ଆସିଲା । କିନ୍ତୁ ମିବାରର ରାଜପୁତମାନେ ବଶ୍ୟତା ସ୍ୱୀକାର କରି ନ ଥିଲେ । ଏଣୁ ଅକବର ୧୫୬୮ ଖ୍ରୀଷ୍ଟାବ୍ଦରେ ଚିତୋର ଆକ୍ରମଣ କରି ଅଧିକାର କଲେ ।

ଉତ୍ତର ଭାରତ-ବିଜୟ ଓ ସାମ୍ରାଜ୍ୟ-ଦୃଢ଼ୀକରଣ :—ଅକବର ୧୫୭୨ ଖ୍ରୀଷ୍ଟାବ୍ଦରେ ଗୁଜରାଟ, ୧୫୭୫ ରେ ଦାଉଦଙ୍କଠାରୁ ବଙ୍ଗଳା ଅଧିକାର କଲେ । ଅକବରଙ୍କ ଭାଇ ମିର୍ଜା ହାକିମଙ୍କ ପରେ କାବୁଲ ୧୫୮୫ ରେ ମୋଗଲସାମ୍ରାଜ୍ୟଭୁକ୍ତ ହେଲା । କିଛିକାଳ ଅକବର କାଶ୍ମୀର ଅଧିକାର କରି ତାହାକୁ ନିଜ ରାଜ୍ୟସାମିଲ କରିଥିଲେ । ୧୫୯୨ ରେ ସିନ୍ଧୁପ୍ରଦେଶ ଏବଂ ୧୫୯୪ ରେ କାନ୍ଦାହାର ମୋଗଲସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଏହିରୂପେ ୪୦ ବର୍ଷ ମଧ୍ୟରେ ଅକବର ଉତ୍ତର ଭାରତକୁ ଜୟକରି ତହିଁରେ ନିଜ ସାମ୍ରାଜ୍ୟ ଦୃଢ଼ୀଭୂତ କରିଥିଲେ ।

ଦାକ୍ଷିଣାତ୍ୟ-ବିଜୟ :—ଅହମଦନଗରରେ ଗୃହବିବାଦ ଲାଗି ଦୁଇ ଦଳର ସୃଷ୍ଟି ହୋଇଥିଲା, ସେମାନଙ୍କରୁ ଏକଦଳ ଅକବରଙ୍କ ସାହାଯ୍ୟ ଲୋଡ଼ିଥିଲେ । ଅକବର ତାଙ୍କ ପୁତ୍ର ମୁରାଦଙ୍କୁ ସେଠାକୁ ପଠାଇଥିଲେ । ମୁରାଦ ଚାନ୍ଦସୁଲ୍ତାନାଙ୍କ ଦ୍ୱାରା ପରାଜିତ ହେଲେ । ୧୫୯୯ ରେ ଅକବର ନିଜେ ସୈନ୍ୟ ଘେନି ସେଠାକୁ ଯାଇଥିଲେ, ଏବଂ ଏହି ସମୟରେ ଚାନ୍ଦସୁଲ୍ତାନା ନିହତ ହୋଇଥିବାରୁ ଅହମଦନଗର ସହଜେ ଅଧିକୃତ ହେଲା । ତତ୍ପରେ ଅକବର ଖାନ୍ଦେଶକୁ ନିଜ ରାଜ୍ୟସାମିଲ କଲେ ।

ଏହା ଦେଖି ବିଜାପୁର ଓ ଗୋଲକୁଣ୍ଡାର ରାଜାମାନେ ଅକବରଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରଥିଲେ । ଏହିରୂପେ ଅକବର ଏକ ପ୍ରକାଣ୍ଡ ମୋଗଲସାମ୍ରାଜ୍ୟ ସ୍ଥାପନ କର ତାହାକୁ ଦୃଢ଼ୀଭୂତ କରବାପରେ ୧୬୦୫ ରେ ପ୍ରାଣତ୍ୟାଗ କଲେ ।

ଜାହାଙ୍ଗିର ଓ ସାହଜାହାନ ; ୧୬୦୫-୧୬୫୮—ଉତ୍ତରଭାରତରେ କେବଳ ମିବାରରାଜ୍ୟ ଅକବରଙ୍କ ଅଧୀନତା ସ୍ୱୀକାର କର ନ ଥିଲା । ଜାହାଙ୍ଗିର ସେଠାକୁ ଅନେକଥର ସୈନ୍ୟ ପଠାଇ ଅକୃତକାର୍ଯ୍ୟ ହୋଇ-ଥିଲେ । ଅବଶେଷରେ ତାହାଙ୍କର ପୁତ୍ର ସାହଜାହାନ ୧୬୧୪ ରେ ତତ୍କାଳୀନ ରାଜା ଅମରସିଂହଙ୍କୁ ବଶ କରବାକୁ ବାଧ୍ୟ କରଥିଲେ । ଅହମଦନଗର ବିଜିତ ହେଲେ ସୁଦ୍ଧା ଅକବରଙ୍କ ଅଧୀନତା ସ୍ୱୀକାର କର ନ ଥିଲା । ମାଲିକ ଅମ୍ବର ଅହମଦନଗରକୁ ସ୍ୱାଧୀନ ରଖିବାକୁ ବିଶେଷ ଚେଷ୍ଟା କରୁଥିଲେ, କିନ୍ତୁ ସେ ସାହଜାହାନଙ୍କ ଦ୍ୱାରା ପରାଜିତ ହୋଇ ବଶ କରବାକୁ ବାଧ୍ୟ ହୋଇଥିଲେ (୧୬୨୧) ।

ସାହଜାହାନଙ୍କ ଅମଲରେ ଅହମଦନଗର ପୁନର୍ବାର ଯୁଦ୍ଧ କର ପରାସ୍ତ ହେବାରୁ ୧୬୩୨ ରେ ମୋଗଲସାମ୍ରାଜ୍ୟ-ଭୁକ୍ତ ହେଲା । ବିଜାପୁର ଓ ଗୋଲକୁଣ୍ଡା ଏହି ଦୁଇ ରାଜ୍ୟ ସାହଜାହାନଙ୍କ କରଦ ରାଜ୍ୟ ହେଲା ।

ଅରଙ୍ଗଜେବ—ସାହଜାହାନଙ୍କ ଅନ୍ତେ ତାଙ୍କ ୪ର୍ଥ ପୁତ୍ର ଅରଙ୍ଗ-ଜେବ କଲକୌଶଳରେ ଅନ୍ୟାନ୍ୟ ଭାଇମାନଙ୍କୁ ହତ୍ୟାକର ସମ୍ରାଟ ହେଲେ । ସେ ଅତ୍ୟନ୍ତ ଅତ୍ୟାଚାରୀ ଓ ହିନ୍ଦୁବିଦ୍ୱେଷୀ ଥିଲେ । ଏହାଙ୍କ ଅମଳରେ ମୋଗଲସାମ୍ରାଜ୍ୟ ଉନ୍ନତର ଚରମ ସୀମାରେ ଉପସ୍ଥିତ ହୋଇଥିଲେ ସୁଦ୍ଧା ତହିଁର ପତନ ଆରମ୍ଭ ହୋଇଥିଲା । ଏହାଙ୍କ ରାଜତ୍ୱର ଆରମ୍ଭକାଳରେ ଦାକ୍ଷିଣାତ୍ୟରେ ବିଖ୍ୟାତ ମରହଟ୍ଟା ଜାତର ଅଭ୍ୟୁଦୟ

ହୋଇଥିଲା । ଶିବାଜ ଏହାର ନେତା ଥିଲେ । କପରି ଏହି ଜାତି ପରାକ୍ରମୀ ହୋଇଥିଲା ତାହା ପରେ କୁହାଯିବ ।

ରାଜପୁତ ବିଦ୍ରୋହ—ଅରଙ୍ଗଜେବ ହିନ୍ଦୁମାନଙ୍କ ଉପରେ ଜିଜିଆ କର ବସାଇବାରୁ ରାଜପୁତମାନେ ମିଳିତ ହୋଇ ବିଦ୍ରୋହୀ ହେଲେ । ମିବାରର ରଣା ରାଜସିଂହ ଏମାନଙ୍କର ନେତା ହୋଇ ଜିଜିଆ କର ଦେବାକୁ ଅସ୍ୱୀକାର କରି ମୋଗଲମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଲାଗିଲେ । ଅବଶେଷରେ ଅରଙ୍ଗଜେବ ବାଧ୍ୟ ହୋଇ ରାଜପୁତମାନଙ୍କ ସଙ୍ଗେ ସନ୍ଧି କରିଥିଲେ ।

ବିଜାପୁର ଓ ଗୋଲକୁଣ୍ଡାର ଅଧିକାର:—ମରହଟ୍ଟାସର୍ଦ୍ଦାର ଶମ୍ଭୁଜିଙ୍କ ମୋଗଲରାଜ୍ୟ-ଲୁଣ୍ଠନରେ ଗୋଲକୁଣ୍ଡାର ରାଜା ସହାୟତା କରିଥିବାରୁ ଅରଙ୍ଗଜେବ ତାହାଙ୍କ ବିରୁଦ୍ଧରେ ସୈନ୍ୟ ପଠାଇ ତାଙ୍କ ସଙ୍ଗେ ପ୍ରଥମେ ସନ୍ଧିସ୍ଥାପନ କଲେ । ତତ୍ପରେ ସେ ବିଜାପୁର ଆକ୍ରମଣ କରି ୧୬୮୬ ରେ ତାହାକୁ ମୋଗଲସାମ୍ରାଜ୍ୟ-ଭୁକ୍ତ କରିଥିଲେ । ତଦନନ୍ତର ସେ ଗୋଲକୁଣ୍ଡାରାଜାଙ୍କ ସନ୍ଧି ଭଗ୍ନ କରି ୧୬୮୮ ରେ ତାହାଙ୍କୁ ପରାସ୍ତ କଲେ ଏବଂ ତାହାଙ୍କ ରାଜ୍ୟକୁ ନିଜ ସାମ୍ରାଜ୍ୟଭୁକ୍ତ କଲେ ।

ଅରଙ୍ଗଜେବଙ୍କ ମହେହଟ୍ଟାଦମନ:—୧୬୮୯ ରେ ଅରଙ୍ଗଜେବ ଶିବାଜିଙ୍କ ପୁତ୍ର ଶମ୍ଭୁଜିଙ୍କୁ ଧରିନେଇ ବଧ କଲେ, ଏବଂ ଶମ୍ଭୁଜିଙ୍କ ପୁତ୍ର ସାହୁଙ୍କୁ କାରାରୁଦ୍ଧ କରି ଅନେକ ମରହଟ୍ଟାଦୁର୍ଗ ଅଧିକାର କରିନେଲେ । କିନ୍ତୁ ମରହଟ୍ଟାମାନେ ପୁନର୍ବାର କ୍ଷମତାଶାଳୀ ହୋଇ ଏକ ଏକ କରି ସମସ୍ତ ଦୁର୍ଗ ଅଧିକାର କରିନେଲେ ଏବଂ ଅରଙ୍ଗଜେବ ବ୍ୟତିବ୍ୟସ୍ତ ହୋଇ ଅହାମଦନଗରକୁ ଫେରିଆସି ସେହିଠାରେ ପଞ୍ଚତ୍ୱପ୍ରାପ୍ତ ହୋଇଥିଲେ (୧୭୦୭) ।

ଅରଙ୍ଗଜେବଙ୍କ ଅନ୍ତେ ତାଙ୍କ ପୁଅ ବାହାଦୁରସାହ ସମ୍ରାଟ୍ ହୋଇ ସମସ୍ତ ରାଜପୁତନାର ସ୍ୱାଧୀନତା ସ୍ୱୀକାର କଲେ । ତହୁଁପରେ ବାହାଦୁରଙ୍କ ଜ୍ୟେଷ୍ଠ ପୁତ୍ର ଜାହାନ୍ଦରସାହ ସମ୍ରାଟ୍ ହେଲେ । କିନ୍ତୁ କେତେକ ମାସ ଉତ୍ତାରେ ସୟଦ ହୁସେନଅଲି ଓ ସୟଦ ଅବଦୁଲ୍ଲା ଦୁଇ ପଠାଣ ଭ୍ରାତା ଏହାଙ୍କୁ ହତ୍ୟା କରି ଏହାଙ୍କ ଭାଇ ଫରକ୍‌ସେୟାରଙ୍କୁ ସିଂହାସନରେ ବସାଇଲେ (୧୭୧୬) । ଏହି ସମୟରୁ ସୟଦ ଭ୍ରାତୃଦ୍ୱୟ ରାଜ୍ୟର ସର୍ବେସର୍ବା ହେଲେ । ଏମାନେ ଇଚ୍ଛାନୁସାରେ ସମ୍ରାଟ୍‌ମାନଙ୍କୁ ସିଂହାସନରେ ବସାଇ ତହିଁରୁ ତଡିଦେଇପାରୁଥିଲେ । ଏମାନେ ଅତ୍ୟାଚାରୀ ଥିବାରୁ ପ୍ରାଦେଶିକ ଶାସନକର୍ତ୍ତାମାନେ ବିଦ୍ରୋହୀ ହେବାକୁ ଲାଗିଲେ । ଏହିପରି ଅରଙ୍ଗଜେବଙ୍କ ମୃତ୍ୟୁର ୪୦ ବର୍ଷ ମଧ୍ୟରେ ମୋଗଲ ସାମ୍ରାଜ୍ୟ ଛାରଖାର ହୋଇଯାଇଥିଲା ।

ନାଦୀରସାହଙ୍କ ଭାରତ-ଆକ୍ରମଣ :—୧୭୩୮ ରେ ପାରସ୍ୟର ରାଜା ନାଦୀରସାହ ଭାରତ ଆକ୍ରମଣ କରି ମୋଗଲସାମ୍ରାଜ୍ୟର ଅସ୍ତିତ୍ୱ ଏକାବେଳକେ ଲୋପ କରିଥିଲେ । ସେ ଦିଲ୍ଲୀ ଅଧିକାର କରି ସମସ୍ତ ଧନସମ୍ପତ୍ତି ଲୁଟିକରି ନେଇଯାଇଥିଲେ । ସିନ୍ଧୁନଦୀର ପଶ୍ଚିମବର୍ତ୍ତୀ ପ୍ରଦେଶ ପାରସ୍ୟରାଜ୍ୟଭୁକ୍ତ ହୋଇଥିଲା ।

ହିନ୍ଦୁରାଜ୍ୟ :—ମୋଗଲସାମ୍ରାଜ୍ୟର ପତନରୁ ଅନେକ ହିନ୍ଦୁରାଜ୍ୟର ଉତ୍ପତ୍ତି ହେଲା । ଗୁର୍ଖାମାନେ ନେପାଳରେ ଏକ ରାଜ୍ୟ ସ୍ଥାପନ କଲେ । ଉତ୍ତରପଶ୍ଚିମରେ ଶିଖମାନେ ପରାକ୍ରମୀ ହୋଇ ପଞ୍ଜାବକୁ ଲୁଟି କରିବାକୁ ଲାଗିଲେ । ଭରତପୁରରେ ଜାଠମାନେ ସ୍ୱାଧୀନ ରାଜ୍ୟ ସ୍ଥାପନ କଲେ । ରାଜପୁତନାର ରାଜାମାନେ ସ୍ୱାଧୀନ ହେଲେ । ଦାକ୍ଷିଣାତ୍ୟରେ ମହୀସୂରରେ ଏକ ହିନ୍ଦୁରାଜ୍ୟ ସ୍ଥାପିତ ହେଲା । ସେତାରା ଓ କୋଲ୍ହାପୁରରେ ଶିବାଜୀଙ୍କ ବଂଶଧରମାନେ ରାଜତ୍ୱ କରୁଥିଲେ । ମରହଟ୍ଟାମାନଙ୍କର

ପାଞ୍ଚଗୋଟି ଦଳ ଭିନ୍ନ ଭିନ୍ନ ସ୍ଥାନରେ ସ୍ୱାଧୀନ ରାଜ୍ୟ ସ୍ଥାପନ କରିଥିଲେ :—ନାଗପୁରଠାରେ ଭୋଁସଲା, ଗୋୟାଲିଅରରେ ସିନ୍ଧିଆ, ଇନ୍ଦୋରରେ ହୋଲକାର ଏବଂ ବରୋଦାରେ ଗାଇକୋବାଡ ସ୍ୱାଧୀନ ରାଜ୍ୟ ସ୍ଥାପନ କରିଥିଲେ। ପୁନାଠାରେ ପେଶବାମାନେ ଅତ୍ୟନ୍ତ ପରାକ୍ରମୀ ହୋଇଥିଲେ । ଏମାନଙ୍କୁ ପଞ୍ଚ ମରହଟ୍ଟା ନେତୃଦଳ ବୋଲାଯାଏ ।

ମୁସଲମାନ ରାଜ୍ୟ :—ଦାକ୍ଷିଣାତ୍ୟରେ ନିଜାମଉଲ୍‌ମୁଲକ୍ ହାଇଦ୍ରାବାଦକୁ ରାଜଧାନୀ କରି ଏକ ସ୍ୱାଧୀନ ରାଜ୍ୟ ସ୍ଥାପନ କରିଥିଲେ । କର୍ଣ୍ଣାଟରେ ଅର୍କଟର ନବାବ ନାମକୁମାତ୍ର ନିଜାମଙ୍କ ଅଧୀନରେ ଥିଲେହେଁ ସର୍ବଦା ସ୍ୱାଧୀନ ହେବାଲାଗି ଚେଷ୍ଟା କରୁଥିଲେ । ଉତ୍ତର-ଭାରତରେ ସିନ୍ଧୁନଦୀର ପଶ୍ଚିମ ପାର୍ଶ୍ୱ ପାରସ୍ୟରାଜ୍ୟଭୁକ୍ତ ହୋଇଥିଲା । ଦିଲ୍ଲୀର ଉତ୍ତରରେ ରୋହିଲା ନାମକ ଏକ ଅଫଗାନ ଜାତି ପରାକ୍ରମୀ ହୋଇ ରୋହିଲଖଣ୍ଡ ନାମକ ଏକ ଅଫଗାନରାଜ୍ୟ ସ୍ଥାପନ କରିଥିଲେ । ଅଯୋଧ୍ୟାର ନବାବ ସାଦତ ଅଲ୍ଲୀ ସ୍ୱାଧୀନ ହୋଇ ବସିଥିଲେ । ଆଲିବର୍ଦ୍ଦିଖାଁ ବଙ୍ଗଳା, ବିହାର ଓ ଓଡ଼ିଶାରେ ସବେଦାର ହୋଇ ସ୍ୱାଧୀନ ହୋଇଥିଲେ (୧୭୪୦) ।

ମରହଟ୍ଟା ଜାତି :—ମୁସଲମାନମାନେ ଭାରତ ଆକ୍ରମଣ କରିବାପୂର୍ବେ ଦାକ୍ଷିଣାତ୍ୟରେ ମହାରାଷ୍ଟ୍ର ନାମରେ ଏକ ପ୍ରଦେଶ ଥିଲା । ସେ ପ୍ରଦେଶର ରାଜା ହିନ୍ଦୁ ଥିଲେ, ଏବଂ ସ୍ୱାଧୀନଭାବରେ ଏହି ପ୍ରଦେଶକୁ ଶାସନ କରୁଥିଲେ । ଏହି ପ୍ରଦେଶର ଅଧିବାସୀମାନଙ୍କୁ ମରହଟ୍ଟା ଏବଂ ସେମାନଙ୍କ ନେତାଙ୍କୁ ସର୍ଦ୍ଦାର କହନ୍ତି ।

ପ୍ରାୟ ୧୬୬୪ ରେ ସାହଜୀଭୋଁସଲା ନାମକ ଏକ ମରହଟ୍ଟାସର୍ଦ୍ଦାର ବିଶେଷ ଖ୍ୟାତି ଲଭିଥିଲେ । ସେ ଅହାମଦନଗର ଓ ବିଜାପୁର ମୁସଲମାନରାଜାଙ୍କ ଅଧୀନରେ ରହି ମୋଗଲମାନଙ୍କ ସହିତ ଯୁଦ୍ଧ

କରୁଥିଲେ । ଏଥିସକାଶେ ସେ ଅନେକ ଜାଗିର ପାଇଥିଲେ ଏବଂ ତାହାଙ୍କ ଅଧୀନରେ ଏକଦଳ ସୈନ୍ୟ ଥିଲା । ଶିବାଜି ଏହି ସାହଜିଙ୍କ ପୁତ୍ର । ସେ ୧୬୨୭ ରେ ଜନ୍ମଗ୍ରହଣ କରିଥିଲେ । ଏହି ବିଖ୍ୟାତ ବ୍ୟକ୍ତିଙ୍କର ସବିଶେଷ ଜୀବନୀ ତୁମ୍ଭେମାନେ ପ୍ରଥମ ଭାଗରେ ପାଠ କରିଅଛ । ସେ ପଶ୍ଚିମଘାଟପର୍ବତସମୂହରେ ଦୁର୍ଗ ନିର୍ମାଣ କରି ବାସ କରୁଥିଲେ । ଦାକ୍ଷିଣାତ୍ୟର ହିନ୍ଦୁ କୃଷକମାନଙ୍କ ଦ୍ୱାରା ତାଙ୍କ ସୈନ୍ୟଦଳ ଗଠିତ ହୋଇଥିଲା । ସେମାନେ ବର୍ଚ୍ଛା ଧରି ସାନ ସାନ ଘୋଡ଼ାରେ ଚଢ଼ି ଯୁଦ୍ଧ କରୁଥିଲେ । ସେମାନେ ଏପରିଭାବରେ ଶିକ୍ଷିତ ହୋଇଥିଲେ ଯେ, ସଙ୍କେତ ପାଇଲାମାତ୍ରେ କାହିଁ ଥାସି ଏକତ୍ରିତ ହୋଇଯାଉଥିଲେ, ଏବଂ ପୁଣି ସଙ୍କେତ ପାଇଲାମାତ୍ରେ କେଉଁଆଡ଼େ ପଳାଇଯାଇ ପାରୁଥିଲେ । କେବଳ ଫସଲକଟାସମୟ ଛାଡ଼ି ସେମାନେ ସବୁ ସମୟରେ ଯୁଦ୍ଧ କରିବାକୁ ପ୍ରସ୍ତୁତ ଥାନ୍ତି । ସେଥିଲାଗି ଶିବାଜିଙ୍କ ଅଧୀନରେ ଅନେକ ସୈନ୍ୟ ଥିଲେହେଁ ସେମାନଙ୍କ ବ୍ୟୟ ନିର୍ବାହ ସକାଶେ ଶିବାଜିଙ୍କ ହାତରୁ ପ୍ରାୟ କିଛି ବ୍ୟୟ ପଡ଼ୁ ନ ଥିଲା ।

ଶିବାଜିଙ୍କ ବଂଶ :—ଶିବାଜିଙ୍କ ଅନ୍ତେ ତାଙ୍କ ପୁତ୍ର ଶମ୍ଭୁଜି ରାଜା ହେଲେ ଏବଂ ୧୬୮୯ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମୋଗଲ ଓ ପର୍ତ୍ତୁଗିଜମାନଙ୍କ ସଙ୍ଗେ ଯୁଦ୍ଧ କରି ସେ ତାଙ୍କ ଜୀବନ କଟାଇଥିଲେ । ୧୬୮୯ ରେ ଅରଙ୍ଗଜେବ ତାଙ୍କୁ ଧରିନେଇ ତାଙ୍କର ଅକ୍ଷି ଫୁଟାଇ ଦେଲେ ଏବଂ ତତ୍ପରେ ଜିଭ କାଟି ମାରିପକାଇଲେ । ତତ୍ପରେ ତାହାଙ୍କର ୬ ବର୍ଷର ପୁଅ ସାହୁ ଅରଙ୍ଗଜେବଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ । ଅରଙ୍ଗଜେବଙ୍କ ମୃତ୍ୟୁପରେ ସାହୁ କାରାମୁକ୍ତ ହେଲେ ସତ୍ୟ, କିନ୍ତୁ ଅନେକଦିନ ମୋଗଲମାନଙ୍କ ଅଧୀନରେ ରହିଥିବାରୁ ତାଙ୍କର ରୀତି, ନୀତି ଅଧାମରହଟ୍ଟା ଓ ଅଧାମୋଗଲ ହୋଇଥିଲା । ସେ

ରାଜ୍ୟଶାସନଭାର ଜଣେ ବ୍ରାହ୍ମଣମନ୍ତ୍ରୀ ବାଲାଜିବିଶ୍ୱନାଥ ଉପରେ ଅର୍ପଣ କରି ଘରେ ବସି କାଳଯାପନ କରୁଥିଲେ । ବାଲାଜିବିଶ୍ୱନାଥ ପେଶବା ଉପାଧି ଧାରଣ କରି ରାଜ୍ୟ ଶାସନ କରୁଥିଲେ । କ୍ରମେ ଏହି ପଦ ପୁରୁଷାନୁକ୍ରମିକ ହୋଇଥିଲା । ଅବଶେଷରେ ପେଶବାମାନଙ୍କର କ୍ଷମତା ମରହଟ୍ଟାରାଜାମାନଙ୍କଠାରୁ ବଳପଡ଼ିଥିଲା । ଶିବାଜିଙ୍କ ବଂଶଧର-ମାନେ କେବଳ ସେତାରା ଓ କୋଲ୍ହାପୁରଠାରେ ରାଜତ୍ୱ କରୁଥିଲେ ।

ପେଶବାବଂଶ :—୧୭୧୮ ଖ୍ରୀ: ଅ: ରେ ପ୍ରଥମ ପେଶବା ବାଲାଜି-ବିଶ୍ୱନାଥ ତତ୍କାଳୀନ ଦିଲ୍ଲୀସମ୍ରାଟଙ୍କ ଉପରେ ପ୍ରଭୂତ କ୍ଷମତା ଲାଭକରି ଦାକ୍ଷିଣାତ୍ୟରୁ ଚୌଥ ଅର୍ଥାତ୍ ରାଜସ୍ୱର ଏକଚତୁର୍ଥାଂଶ ଆଦାୟ କରିବାର କ୍ଷମତା ପାଇଥିଲେ । ମରହଟ୍ଟାମାନେ ପୁନା ଓ ସେତାରାର ଚତୁର୍ଦ୍ଦିଗସ୍ଥ ସ୍ଥାନସମୂହ ଅଧିକାର କରିଥିଲେ । ଦ୍ୱିତୀୟ ପେଶବା ବାଜିରାଓ (୧୭୨୮-୪୦) ଦାକ୍ଷିଣାତ୍ୟରେ ନିଜ ରାଜ୍ୟ ବିସ୍ତାର କରିଥିଲେ । ୧୫ ବର୍ଷ ମଧ୍ୟରେ ସେ ଦିଲ୍ଲୀସମ୍ରାଟଙ୍କଠାରୁ ମାଲବ ଓ ନର୍ମଦାଠାରୁ ଚମ୍ବଲ୍ ପର୍ଯ୍ୟନ୍ତ ସମସ୍ତ ସ୍ଥାନ ଛଡ଼ାଇନେଇଥିଲେ । ୧୭୩୯ ରେ ସେ ପର୍ତ୍ତୁଗିଜ-ମାନଙ୍କଠାରୁ ବେସିନ ନଗର ବଳପୂର୍ବକ ନେଇଯାଇଥିଲେ । ତୃତୀୟ ପେଶବା ବାଲାଜିବାଜିରାଓ ମରହଟ୍ଟାମାନଙ୍କର କ୍ଷମତା ମୋଗଲସାମ୍ରାଜ୍ୟର କେନ୍ଦ୍ରସ୍ଥଳ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ଦାକ୍ଷିଣାତ୍ୟରେ ନିଜାମଙ୍କ ରାଜ୍ୟର କେତେକାଂଶ ଜୟକରି ନିଜ ରାଜ୍ୟ ବଢ଼ାଇଥିଲେ । ଏ ସମୟରେ ମରହଟ୍ଟାମାନଙ୍କର ଦୁଇଗୋଟି ପ୍ରଧାନ ଦଳ ଥିଲା—ଗୋଟିଏ ଦଳ ପୁନାଠାରେ, ଅଉ ଗୋଟିଏ ଦଳ ନାଗପୁରଠାରେ । ନାଗପୁର ଦଳକୁ ଭୋଁସଲାଦଳ କୁହାଯାଉଥିଲା । ନାଗପୁରର ଭୋଁସଲାଦଳ ୧୭୪୧-୪୨ ରେ ବଙ୍ଗଳା ଆକ୍ରମଣ କରି ବଙ୍ଗଳା-ଶାସନକର୍ତ୍ତା ଆଲିବର୍ଦ୍ଦି-ଖାଁଙ୍କ ଦ୍ୱାରା ପରାଜିତ ହୋଇଥିଲେ । ୧୭୪୩ ରେ ଭୋଁସଲାଦଳର ସର୍ଦ୍ଦାର ରଘୁଜି ଭୋଁସଲା ନିଜେ ବଙ୍ଗଳା ଆକ୍ରମଣ କରି ଲୁଟି

କରୁଥିଲେ । ୧୭୫୧ ରେ ଏହି ମରହଟ୍ଟା ଦଳ ବଙ୍ଗଳାରୁ ଚୌଥ ଆଦାୟ କଲେ, ଓ ଓଡ଼ିଶାକୁ ଅଲିବର୍ଦ୍ଦିଖାଁଙ୍କଠାରୁ ପାଇଥିଲେ ।

ପୁନାର ମରହଟ୍ଟାଦଳ ପଞ୍ଜାବ ପର୍ଯ୍ୟନ୍ତ ଲୁଟିକରିବାକୁ ଆରମ୍ଭ କରିଥିଲେ । ପଞ୍ଜାବପ୍ରଦେଶ ସେ ସମୟରେ ଅଫଗାନିସ୍ଥାନର ରାଜା ଅହମଦଶାହଦୁରାଣିଙ୍କ ଅଧୀନରେ ଥିଲା । ସେ ରାଗାନ୍ୱିତ ହୋଇ ମରହଟ୍ଟାମାନଙ୍କୁ ଦମନ କରିବା ସକାଶେ ଆୟୋଜନ କଲେ । ୧୭୬୧ ରେ ପାନିପଥଠାରେ ଗୋଟିଏ ଘୋରଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ମରହଟ୍ଟାମାନଙ୍କର କ୍ଷମତା ଏକାବେଳକେ ଚୂର୍ଣ୍ଣୀକୃତ ହୋଇଯାଇଥିଲା ।

ବାଲାଜୀବାଜିରାଓଙ୍କ ଅନ୍ତେ ମଧୁରାଓ ୧୭୬୧ ରେ ପେଶବା ହେଲେ । ତାଙ୍କ ଅନ୍ତେ ତାଙ୍କ ସାନ ଭାଇ ନାରାୟଣରାଓ ୧୭୭୨ ରେ ପେଶବା ହୋଇଥିଲେ, କିନ୍ତୁ ଅଳ୍ପଦିନ ପରେ ସେ ନିହତ ହେଲେ ।

---

### ମୋଗଲ ସମ୍ରାଜ୍ୟ ସ୍ଥାପନଠାରୁ ଇଂରେଜଶାସନ ସ୍ଥାପନ ପର୍ଯ୍ୟନ୍ତ— ସାମାଜିକ ଅବସ୍ଥା ।

ବାବରଙ୍କ ସିଂହାସନ-ଅଧିରୋହଣଠାରୁ ଇଂରେଜମାନଙ୍କର ରାଜ୍ୟ-ସ୍ଥାପନ ପର୍ଯ୍ୟନ୍ତ ପ୍ରାୟ ସାର୍ଦ୍ଧଦୁଇଶତବର୍ଷ ଅତୀତ ହୋଇଥିଲା । ଏହି ସମୟମଧ୍ୟରେ ଭାରତର ରାଜନୈତିକ ଅବସ୍ଥାରେ ଯେପରି ଘୋର ପରିବର୍ତ୍ତନ ଘଟିଥିଲା, ସାମାଜିକ ଅବସ୍ଥାରେ ମଧ୍ୟ ସେହିପରି ଘୋର ବିପର୍ଯ୍ୟୟ ଘଟିଥିଲା । ମାତ୍ର ଅକବର ବାଦସାହଙ୍କ ସାମ୍ୟନୀତି ଓ ଉଦାର ଭାବ ହେତୁରୁ ଏହି ପରିବର୍ତ୍ତନକୁ ଲୋକେ ବୁଝିପାରି ନ ଥିଲେ । ଯେବେ ଆଉ ଜଣକେତେ ସମ୍ରାଟ୍ ଅକବରଙ୍କ ପରି ରାଜ୍ୟଶାସନ କରିଥାନ୍ତେ ତେବେ ହିନ୍ଦୁ ଓ ମୁସଲମାନ ଏହି ଦୁଇଜାତି ମିଶିଯାଇ ଏକ ଭାରତୀୟ ମହାଜାତିରେ ପରିଣତ ହୋଇଯାଇବାର ଆଶା ଥିଲା । କିନ୍ତୁ

ବିଧାତାଙ୍କର ବିଧାନ ଅନ୍ୟପ୍ରକାର । ଔରଙ୍ଗଜେବଙ୍କ ବୈଷମ୍ୟନୀତି ସେହି ନୀତିଜ୍ଞ ଅକବରଙ୍କର ଏହି ମହତ୍ କାର୍ଯ୍ୟକୁ ସମ୍ପୂର୍ଣ୍ଣରୂପେ ଉଲଟାଇ ପକାଇଥିଲା । ତଦ୍ଦ୍ୱାରା ହିନ୍ଦୁ ଓ ମୁସଲମାନମାନଙ୍କର ପରସ୍ପର ପ୍ରତି ଘୃଣା ଓ ଶତ୍ରୁତା ଆରମ୍ଭ ହେଲା ଏବଂ ମିତ୍ରତା ଏକାବେଳକେ ଲୋପ ପାଇଲା ।

ଶାସନପ୍ରଣାଳୀ :—ଅକବର ରାଜ୍ୟଶାସନ-ପ୍ରଣାଳୀରେ ବିଶେଷ ଉନ୍ନତି କରିଯାଇଥିଲେ । ପ୍ରତ୍ୟେକ ପ୍ରଦେଶ ଗୋଟିଏ ସୁବାଦାର କିମ୍ବା ନବାବଙ୍କ ଅଧୀନରେ ରହିଥିଲା । ସୁବାଦାରଙ୍କ ଅଧୀନରେ ଅନେକ କର୍ମଚାରୀ ରହୁଥିଲେ; ଦେୱାନ ସେମାନଙ୍କ ମଧ୍ୟରେ ପ୍ରଧାନ । ଦେୱାନ ରାଜସ୍ୱ ଆଦାୟ କରୁଥିଲେ, ଏବଂ ରାଜସ୍ୱସମ୍ବନ୍ଧୀୟ ସମସ୍ତ ମକଦ୍ଦମା ନିଷ୍ପତ୍ତି କରୁଥିଲେ । ସୁବାଦାର ସୈନ୍ୟ ପରିଚାଳନ କରୁଥିଲେ ଏବଂ ଫୌଜଦାରୀ ମାମଲା ବୁଝୁଥିଲେ । ଯେତେଦିନ ପର୍ଯ୍ୟନ୍ତ ସୁବାଦାର ଓ ଦେୱାନମାନେ ନିୟମିତରୂପେ ରାଜସ୍ୱ ଦାଖଲ କରି ସମ୍ରାଟଙ୍କ ପ୍ରାଧାନ୍ୟ ସ୍ୱୀକାର କରୁଥିଲେ, ତେତେଦିନ ପର୍ଯ୍ୟନ୍ତ ସମ୍ରାଟ୍ ସେମାନଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରୁ ନ ଥିଲେ; ଏବଂ ସେମାନେ ରାଜାପରି ଦେଶଶାସନ କରୁଥିଲେ । ସୁବାଦାର ପଦ ପୁରୁଷାନୁକ୍ରମିକ ହୋଇଯାଇଥିଲା ।

ଜାଗିରଦାର ଓ ଜମିଦାର :—ଭାରତର ହିନ୍ଦୁ ରାଜାମାନେ ଧର୍ମ ଓ ଦାତବ୍ୟ କାର୍ଯ୍ୟରେ ଭୂମି ଦାନ କରୁଥିଲେ । ଅଉ ମଧ୍ୟ ଗୁଣୀ କର୍ମଚାରୀମାନଙ୍କର ପ୍ରତିପୋଷଣ ନିମନ୍ତେ ଜମି ଖଞ୍ଜିଦେଉଥିଲେ । ଏହି ପ୍ରଥା ଅତି ପୁରାକାଳରୁ ଚଳିଆସୁଥିଲା । ମୁସଲମାନ ଶାସନ ସମୟରେ ଗୁଣୀ କର୍ମଚାରୀମାନଙ୍କୁ ଦିଆଯାଉଥିବା ଜମିକୁ ଜାଗିର କୁହାଯାଉଥିଲା । ଏହିସବୁ ଜାଗିର ପୁରୁଷାନୁକ୍ରମିକ ହୋଇଥିଲା । ଜାଗିରଦାରମାନେ ସେମାନଙ୍କର ଜାଗିରରୁ ରାଜାଙ୍କ ନ୍ୟାଯ୍ୟ ପ୍ରାପ୍ୟ ତାଙ୍କୁ ଦେଇ ଅଉ ସମସ୍ତ ରାଜସ୍ୱ ଭୋଗ କରୁଥିଲେ । ମୁସଲମାନ ସମ୍ରାଟ୍‌ମାନେ ସେନାପତି-ମାନଙ୍କୁ ବେତନ ପରିବର୍ତ୍ତେ ଜାଗିର ଦେଉଥିଲେ । ଏହାର ଫଳ

ଏହାହିଁ ହୋଇଥିଲା ଯେ, ସମ୍ରାଟଙ୍କ ଖାସ ଜମି କ୍ରମଶଃ ହ୍ରାସ ଲଭିଥିଲା ଏବଂ ରାଜାଙ୍କ ହସ୍ତରୁ ରାଜସ୍ୱଅଦାୟ‌କାର୍ଯ୍ୟ କ୍ରମେ କମିଯାଇଥିଲା । ଅକବର ଏହି ପ୍ରଥା ରହିତ କରି କର୍ମଚାରୀମାନଙ୍କୁ ବେତନ ଦେଇଥିଲେ । ମାତ୍ର ତାହାଙ୍କର ଉତ୍ତରାଧିକାରୀମାନେ ଏହି ପ୍ରଥା ଚଳାଇ ପାରି ନ ଥିଲେ ଏବଂ ଜାଗିରଦାରମାନଙ୍କ ସଂଖ୍ୟା କ୍ରମଶଃ ବଢ଼ିଥିଲା ।

ଏହାଛଡ଼ା ଜମିଦାର ବୋଲି ଆଉ ଥୋକେ ଲୋକ ଥିଲେ । ଏମାନେ ପୁରୁଷାନୁକ୍ରମେ ପ୍ରଜାମାନଙ୍କଠାରୁ କର ଅଦାୟ କରି ସ୍ୱୀୟ ପ୍ରାପ୍ୟ ରଖି ଅବଶିଷ୍ଟ ଅଂଶକୁ ସୁବାଦାରଙ୍କ ହାତରେ ସମ୍ରାଟଙ୍କୁ ଦେଉଥିଲେ । ଯେଉଁ ରାଜାମାନେ ସାକ୍ଷାତ ଭାବରେ ସମ୍ରାଟଙ୍କୁ କର ଦେଉଥିଲେ ସେମାନଙ୍କୁ ସୁଦ୍ଧା ମୁସଲମାନମାନେ ଜମିଦାର ବୋଲି ଡାକୁଥିଲେ ।

ଜାଗିରଦାର ଓ ଜମିଦାରମାନେ ନିଜ ଅଧିକୃତ ସ୍ଥାନମାନଙ୍କରେ ସମ୍ପୂର୍ଣ୍ଣ କ୍ଷମତା ଚଳାଉଥିଲେ । ସେମାନେ ଶାନ୍ତିରକ୍ଷା କରୁଥିଲେ ଏବଂ ମକଦ୍ଦମାମାନ ଶୁଣି ନିଷ୍ପତ୍ତି କରୁଥିଲେ । ସେମାନେ ଆପଣା ମଧ୍ୟରେ ଯୁଦ୍ଧ କରିପାରୁଥିଲେ ଏବଂ ପରାକ୍ରାନ୍ତ ହେଲେ ଜଣେ ଅନ୍ୟଜଣକର ସ୍ଥାନ ଅଧିକାର କରୁଥିଲା ।

ଐତିହାସିକ ସାହିତ୍ୟର ଉନ୍ନତି :—ମୁସଲମାନମାନେ ଏ ଦେଶକୁ ଆସିଲାଦିନରୁ ଏ ଦେଶରେ ଇତିହାସ ଲେଖିବାର ରୀତି ଚଳିଲା । ଏହି ପ୍ରଥା ହିନ୍ଦୁମାନଙ୍କ ମଧ୍ୟରେ ଆଦୌ ନ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମୁସଲମାନମାନେ ଅନେକ ଇତିହାସ ଲେଖିଯାଇଅଛନ୍ତି । ଆହୁରି ମଧ୍ୟ କେତେକ ମୋଗଲସମ୍ରାଟ୍ ନିଜ ନିଜ ଶାସନର ବିବରଣ ରଖିଯାଇଅଛନ୍ତି । ଫେରିସ୍ତା, ଅବୁଲଫାଜଲ, ଖାଫିଖାଁ ପ୍ରଭୃତି ବିଖ୍ୟାତ ଇତିହାସଲେଖକମାନେ ମୁସଲମାନ । ଫେରିସ୍ତା ଅକବରଙ୍କ ରାଜତ୍ୱ ପର୍ଯ୍ୟନ୍ତ ହିନ୍ଦୁସ୍ଥାନର ଇତିହାସ ଲେଖିଯାଇଅଛନ୍ତି । ଅବୁଲ-ଫାଜଲ ତାଙ୍କର ଅକବରନାମା ଓ ଆଇନଅକବରୀରେ ଅକବରଙ୍କ

ଜୀବନଚରିତ ଓ ତାହାଙ୍କ ଶାସନ ବିଷୟ ଲେଖିଅଛନ୍ତି । ଆରଙ୍ଗଜେବଙ୍କ ସମୟରେ ଖାଫିଖାଁ ସେ ସମୟର ଇତିହାସ ଲେଖିଅଛନ୍ତି । ମିର ଗୋଲାମ-ହୁସେନଖାଁ ତାଙ୍କ ସିୟାରଉଲ୍ ମୁତାଖେରନ୍ ନାମକ ଗ୍ରନ୍ଥରେ ମୋଗଲ-ସାମ୍ରାଜ୍ୟର ପତନଠାରୁ ଇଂରେଜରାଜ୍ୟସ୍ଥାପନ ପର୍ଯ୍ୟନ୍ତ ଇତିହାସ ଲେଖିଯାଇଅଛନ୍ତି ।

ପ୍ରାଦେଶିକ ଭାଷାର ଉନ୍ନତି :—ପୂର୍ବେ କୁହାଯାଇଅଛି ଯେ ୧୫ଶ ଏବଂ ୧୬ଶ ଶତାବ୍ଦୀରେ କେତେକ ଧର୍ମପ୍ରଚାରକ ଜନ୍ମଗ୍ରହଣ କରି ଲୋକ-କଥିତ ଭାଷାର ଉନ୍ନତି କରିଥିଲେ । ମୋଗଲରାଜତ୍ୱ ସମୟରେ ଏହି ପ୍ରାଦେଶିକ ଭାଷାମାନଙ୍କର ଅଧିକ ଉନ୍ନତି ହୋଇଥିଲା । ଏ ସମୟରେ କୃତ୍ତିବାସ, ମୁକୁନ୍ଦରାମ, କାଶୀଦାସ ଏବଂ ଭାରତଚନ୍ଦ୍ର ପ୍ରଭୃତି କବିମାନେ କବିତାମାନ ଲେଖି ବଙ୍ଗଭାଷାର ବିଶେଷ ଉନ୍ନତି କରିଥିଲେ । ଏମାନଙ୍କ ପରେ ତୁକାରାମ ମହାରାଷ୍ଟ୍ରୀୟ ଭାଷାର ଏବଂ ତୁଲସୀଦାସ ହିନ୍ଦୀଭାଷାର ଉନ୍ନତି କରିଥିଲେ । ଦୀନକୃଷ୍ଣଦାସ, ବଳରାମଦାସ ଏବଂ ଉପେନ୍ଦ୍ରଭଞ୍ଜ ପ୍ରଭୃତି କବିମାନେ ଏହି ସମୟର ଲୋକ । ସେମାନଙ୍କ ଲିଖିତ କବିତା-ମାନଙ୍କ ଦ୍ୱାରା ଓଡ଼ିଆ ଭାଷାର ବିଶେଷ ଉନ୍ନତି ସାଧିତ ହୋଇଥିଲା ।

ଶିଳ୍ପୋନ୍ନତି :—ମୁସଲମାନମାନେ ଏ ଦେଶରେ ଶିଳ୍ପର ବିଶେଷ ଉନ୍ନତି କରିଥିଲେ । ସାହଜାହାନଙ୍କ ନିର୍ମିତ ତାଜମହଲ, ଜୁମାମସ୍‌ଜିଦ୍, ଦେୱାନ ଖାସ ଜଗଦ୍‌ବିଖ୍ୟାତ ଶିଳ୍ପକୀର୍ତ୍ତି ଅଟେ । ଏହି ସମୟରେ ସଙ୍ଗୀତବିଦ୍ୟାର ମଧ୍ୟ ଉନ୍ନତି ହୋଇଥିଲା ।

---

## ବ୍ରିଟିଶ ରାଜତ୍ୱ ।

### ଭାରତରେ ଇଉରୋପୀୟମାନଙ୍କର ପ୍ରଥମ ସମାଗମ—ଉତ୍ତମାଶା-ଅନ୍ତରୀପର ଆବିଷ୍କାର ।

ଅଲେକଜାଣ୍ଡର ଭାରତକୁ ଆସିବାଦିନୁଁ ଭାରତର ବିବରଣ

ଇଉରୋପରେ କ୍ରମଶଃ ପ୍ରଚଳିତ ହୋଇଥିଲା । ସେହି ଦିନଠାରୁ ପର୍ତ୍ତୁଗିଜ ନାବିକ ଭାସ୍କୋଡ଼ିଗାମାଙ୍କ ଆଗମନ ପର୍ଯ୍ୟନ୍ତ ଇଉରୋପର ଅଧିବାସୀମାନେ ଏସିଆ ବା ପୂର୍ବଦେଶମାନଙ୍କ ସଙ୍ଗେ ପ୍ରତ୍ୟକ୍ଷଭାବରେ ବାଣିଜ୍ୟ



ଭାସ୍କୋଡ଼ିଗାମା ଓ ଜାମୋରିନ୍ ।

କରି ପାରୁ ନ ଥିଲେ । ଆରବୀୟମାନେ ଅତ୍ୟନ୍ତ କ୍ଷମତାଶାଳୀ ଥିବାରୁ କେବଳ ସେହିମାନେହିଁ ଜଳପଥରେ ଭାରତବର୍ଷ ଓ ତାହାର ନିକଟବର୍ତ୍ତୀ ଦ୍ୱୀପସମୂହରେ ବାଣିଜ୍ୟ କରୁଥିଲେ । ଏମାନେ ଭାରତ ଓ ତନ୍ନିକଟବର୍ତ୍ତୀ ଦ୍ୱୀପସମୂହରୁ ଶାଲ, ରେଶମୀ ଲୁଗା, ମସଲା, ସୁନା ଓ ରୁପାର ଅଳଙ୍କାର ଓ ହାତୀଦାନ୍ତର କାରୁକାର୍ଯ୍ୟ ପ୍ରଭୃତି ନେଇ ଅଧିକ ମୂଲ୍ୟରେ ଇଟାଲିର ଜେନୋଆ ଏବଂ ଭେନିସ୍‌ବାସୀମାନଙ୍କୁ ବିକ୍ରୟ କରୁଥିଲେ । ଶେଷୋକ୍ତ ସ୍ଥାନର ଅଧିବାସୀମାନେ ଏହି ଦ୍ରବ୍ୟସବୁ ଅତ୍ୟଧିକ ମୂଲ୍ୟରେ ଫ୍ରାନ୍ସ, ସ୍ପେନ, ଇଂଲଣ୍ଡ ପ୍ରଭୃତି ସ୍ଥାନରେ ବିକ୍ରୟ କରୁଥିଲେ ।

ଆରବୀୟମାନଙ୍କର ଏହି ଏକାଧିପତ୍ୟ ବାଣିଜ୍ୟ ଉଠାଇଦେବାଲାଗି ଇଉରୋପର ପଶ୍ଚିମାଞ୍ଚଳବାସୀମାନେ ଦୃଢ଼ପ୍ରତିଜ୍ଞ ହୋଇଥିଲେ । କିନ୍ତୁ ଭୂମଧ୍ୟସାଗର ଏବଂ ଲୋହିତସାଗର ବ୍ୟତୀତ ଆଉ କୌଣସି ବାଟଦେଇ ଭାରତକୁ ଆସିବାର ଉପାୟ ନ ଥିଲା । ଭୂମଧ୍ୟସାଗରରେ ଇଟାଲିର ଜେନୋଆବାସୀମାନେ ଅତ୍ୟନ୍ତ ପ୍ରବଳ ଥିଲେ ଏବଂ ଲୋହିତସାଗର ଆରବୀୟମାନଙ୍କର ଅଧୀନ ଥିବାରୁ ଇଉରୋପୀୟମାନେ ଅନ୍ୟବାଟ ଦେଇ ଭାରତକୁ ଆସିବାଲାଗି ଚେଷ୍ଟା କରୁଥିଲେ ।

ଇଉରୋପବାସୀମାନେ ଉତ୍ତରପଶ୍ଚିମ ସମୁଦ୍ରବାଟ ଦେଇ ଭାରତକୁ ଜଳପଥରେ ଆସିବାଲାଗି ଅନେକ ଥର ଚେଷ୍ଟା [illegible] ହୋଇଥିଲେ । ୧୫ଶ ଶତାବ୍ଦୀରେ ଇଉରୋପରେ [illegible] ପଥରେ ଜାହାଜ ଚଳାଇବା ବିଷୟରେ ଅତ୍ୟନ୍ତ କୌତୂହଳ [illegible] ଖ୍ରୀ: ଅବ୍ଦରେ ସ୍ପେନ ଦେଶର ରାଜା ପଶ୍ଚିମ ସାଗରଦେଇ [illegible] ଆସିବାଲାଗି କଲମ୍ବସ୍‌ଙ୍କୁ ପଠାଇଥିଲେ ; କିନ୍ତୁ ସେ ଭାରତକୁ ଆସି ନ [illegible] ଆମେରିକା ମହାଦେଶ ଆବିଷ୍କାର କଲେ । ଏହାର ୬ ବର୍ଷପରେ ୧୪୯୮ ଅବ୍ଦରେ ପର୍ତ୍ତୁଗାଲବାସୀ ଭାସ୍କୋଡ଼ିଗାମା ନାମକ ଏକ ବ୍ୟକ୍ତି ପୂର୍ବ ବାଟେ ଭାରତକୁ ଆସିବାଲାଗି ଲିସ୍‌ବନରୁ ବାହାରିଥିଲେ ଏବଂ କୃତକାର୍ଯ୍ୟ ମଧ୍ୟ ହୋଇଥିଲେ । ସେ ସମୁଦ୍ରପଥରେ ଆଫ୍ରିକାର ଦକ୍ଷିଣସ୍ଥିତ ଅନ୍ତରୀପକୁ ବେଷ୍ଟନ କରି ୧୪୯୮ ଖ୍ରୀ: ଅ: ମଇମାସର ୨୦ ତାରିଖରେ ଭାରତର ପଶ୍ଚିମ ଉପକୂଳରେ ଥିବା କାଲିକଟ ନଗରରେ ପହୁଞ୍ଚିଥିଲେ । ଭାରତକୁ ଆସିବାର ଆଶା ପୂର୍ଣ୍ଣ ହେବାରୁ ଆଫ୍ରିକାର ଦକ୍ଷିଣବର୍ତ୍ତୀ ଅନ୍ତରୀପର ନାମ ଉତ୍ତମାଶା ଅନ୍ତରୀପ ଦିଆଯାଇଥିଲା । ଭାରତକୁ ଆସିବାଲାଗି ଭାସ୍କୋଡ଼ିଗାମାଙ୍କୁ ପ୍ରାୟ ୧୧ ମାସ ଲାଗିଥିଲା । ଏହାଙ୍କର ଭାରତ-ପ୍ରବେଶକୁ ଇଉରୋପୀୟମାନଙ୍କର ଭାରତରେ ପ୍ରଥମ ସମାଗମ କୁହାଯାଏ । ଏହି ବ୍ୟକ୍ତି ଉତ୍ତମାଶା ଅନ୍ତରୀପର ଆବିଷ୍କାରକ । ଏପର୍ଯ୍ୟନ୍ତ

ଇଉରୋପବାସୀମାନେ ଉତ୍ତମାଶା ଅନ୍ତରୀପ ଦେଇ ଭାରତକୁ ବାଟ ଥିବାର ଜାଣି ନ ଥିଲେ । ଏହି ଅନ୍ତରୀପ ଆବିଷ୍କାର କରିବାଦିନୁଁ ଇଉରୋପୀୟ ଜାତିମାନଙ୍କ ମଧ୍ୟରୁ କେବଳ ପର୍ତ୍ତୁଗିଜମାନେ ୧୦୦ ବର୍ଷ ପର୍ଯ୍ୟନ୍ତ ଭାରତ ସଙ୍ଗେ ପ୍ରତ୍ୟକ୍ଷଭାବରେ ବାଣିଜ୍ୟ କରିଥିଲେ ।

ଓଲନ୍ଦାଜମାନଙ୍କ ଆଗମନ :— ଇଉରୋପର ହଲାଣ୍ଡଦେଶବାସୀମାନଙ୍କୁ ଓଲନ୍ଦାଜ କହନ୍ତି । ସର୍ବପ୍ରଥମେ ଏମାନେ ପର୍ତ୍ତୁଗିଜମାନଙ୍କ ଏକାଧିପତ୍ୟ ବାଣିଜ୍ୟ ଧ୍ୱଂସ କରିବାଲାଗି କୃତସଂକଳ୍ପ ହୋଇଥିଲେ । ଏମାନେ ପ୍ରଥମେ ଇଉରୋପ ଓ ଏସିଆର ଉତ୍ତରରେ ଥିବା ସମୁଦ୍ର ଦେଇ ଭାରତକୁ ଆସିବାଲାଗି ଚେଷ୍ଟା କରିଥିଲେ । ଏହି ଦେଶର ଉଇଲିୟମ୍ ବାରେଣ୍ଟସ୍ ନାମକ ଏକ ବ୍ୟକ୍ତି ଏହିବାଟେ ଆସିବାଲାଗି ତିନିଥର ଚେଷ୍ଟା କରି ଶେଷଥର ମୃତ୍ୟୁମୁଖରେ ପଡ଼ିଥିଲେ । ୧୫୯୬ ଖ୍ରୀ: ଅବ୍ଦରେ ସେହି ଦେଶର କର୍ଣ୍ଣେଲିୟସ ହୁଟମାନ୍ ନାମକ ଏକ ବ୍ୟକ୍ତି ଉତ୍ତମାଶା ଦେଇ ସୁମାତ୍ରା ଏବଂ ଜାଭାଦ୍ୱୀପରେ ପହଞ୍ଚିଥିଲେ । ତତ୍ପରେ ଏସିଆମହାଦେଶ ଓ ଦ୍ୱୀପମାନଙ୍କ ସଙ୍ଗେ ବାଣିଜ୍ୟ କରିବାଲାଗି ହଲାଣ୍ଡରେ କେତେଗୁଡ଼ିଏ ବଣିକ୍‌ଦଳ ବା କମ୍ପାନି ସ୍ଥାପିତ ହୋଇଥିଲା । ୧୬୦୨ ରେ ଓଲନ୍ଦାଜ ଗବର୍ଣ୍ଣମେଣ୍ଟ ଏମାନଙ୍କୁ ଏକତ୍ରିତ କରି "ଓଲନ୍ଦାଜ ଇଷ୍ଟ ଇଣ୍ଡିଆ କମ୍ପାନି" ନାମ ଦେଇଥିଲେ । ୧୬୧୯ ରେ ଏମାନେ ଜାଭାଦ୍ୱୀପରେ ବାଟେଭିଆ ନାମକ ଏକ ନଗର ସ୍ଥାପନ କରି ତାହାକୁ ପୂର୍ବଦେଶରେ ସେମାନଙ୍କ ଅଧିକୃତ ସ୍ଥାନସମୂହର ରାଜଧାନୀ କରିଥିଲେ ।

ସପ୍ତଦଶ ଶତାବ୍ଦୀରେ ଓଲନ୍ଦାଜମାନେ ପୃଥିବୀରେ ସାମୁଦ୍ରିକ କ୍ଷମତାରେ ସର୍ବଶ୍ରେଷ୍ଠ ହୋଇଥିଲେ । ୧୬୨୩ ରେ ସେମାନେ ଆମ୍ବୋୟନା ନାମକ ଦ୍ୱୀପରେ ଇଂରେଜମାନଙ୍କୁ ନିର୍ଦ୍ଦୟଭାବରେ ହତ୍ୟା କରିଥିଲେ ।

ସେମାନେ ମଧ୍ୟ କ୍ରମେ କ୍ରମେ ପର୍ତ୍ତୁଗିଜମାନଙ୍କୁ ଭାରତୀୟ ଦ୍ୱୀପପୁଞ୍ଜରୁ ତଡ଼ି ଦେଇଥିଲେ ଏବଂ ୧୬୦୫ରେ ଫରମୋଜା ଓ ୧୬୪୦ରେ ମଲକ୍କା-ଦ୍ୱୀପପୁଞ୍ଜ ଅଧିକାର କରିଥିଲେ ।

ଇଂରେଜ ଆଗମନ :—ଇଂଲଣ୍ଡର ଅଧିବାସୀମାନଙ୍କୁ ଇଂରେଜ ବୋଲାଯାଏ । ସେମାନେ ପ୍ରଥମେ ଉତ୍ତରପଶ୍ଚିମବାଟ ଦେଇ ଉତ୍ତରମହାସମୁଦ୍ର ପାରହୋଇ ଭାରତକୁ ଆସିବାଲାଗି ଚେଷ୍ଟା କରିଥିଲେ । ୧୪୯୭ରେ ସପ୍ତମ ହେନେରୀ ଜନ୍ କାବଟ୍ ଓ ତାଙ୍କର ତିନି ପୁତ୍ରଙ୍କୁ ୨ଗୋଟି ଜାହାଜ ଦେଇ ଭାରତକୁ ଆସିବାଲାଗି ଉତ୍ତରପଶ୍ଚିମ ବାଟ ଅନ୍ୱେଷଣ କରିବାକୁ ପଠାଇଥିଲେ । ସେମାନେ ତହିଁରେ ଅକୃତକାର୍ଯ୍ୟ ହୋଇ ଆମେରିକାର ନିଉଫାଉଣ୍ଡଲଣ୍ଡଦ୍ୱୀପ ଅବିଷ୍କାର କରି ଫେରି ଯାଇଥିଲେ । ୧୫୫୩ରେ ସର୍ ହିଉ ଉଇଲୋବି ଉତ୍ତର-ପୂର୍ବବାଟ ଦେଇ ଉତ୍ତର ମହାସମୁଦ୍ର ପାରହୋଇ ଭାରତକୁ ଆସିବାର ଚେଷ୍ଟା କରି ମୃତ୍ୟୁମୁଖରେ ପଡ଼ିଥିଲେ । ତତ୍ପରେ ୧୫୭୬ ଠାରୁ ୧୬୧୬ ପର୍ଯ୍ୟନ୍ତ ଫ୍ରବିଶର୍, ଡେଭିସ୍, ହଡ୍‌ସନ୍ ଏବଂ ବେଫିନ୍ ନାମକ ବ୍ୟକ୍ତିମାନେ ଉତ୍ତରପଶ୍ଚିମ ବାଟ ଅନ୍ୱେଷଣ କରିବାଲାଗି ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଥିଲେ । ହଲଣ୍ଡବାସୀ କର୍ଣ୍ଣେଲିୟସ୍ ହୁଟମାନ୍ ୧୫୯୬ ରେ ଉତ୍ତମାଶାଅନ୍ତରୀପ ବେଷ୍ଟନ କରି ଭାରତ-ଆଗମନର ପଥ ଅବିଷ୍କାର କରିବାରୁ ଇଂଲଣ୍ଡରେ "ଇଷ୍ଟ ଇଣ୍ଡିଆ କମ୍ପାନି" ନାମକ ଏକ କମ୍ପାନି ଗଠିତ ହେଲା । ଏହା କିପରି ଗଠିତ ହେଲା ପରେ କୁହାଯିବ । ଭାରତ ଓ ଭାରତୀୟ ଦ୍ୱୀପପୁଞ୍ଜରେ ପ୍ରତ୍ୟକ୍ଷଭାବରେ ବାଣିଜ୍ୟ କରିବା ଏହି କମ୍ପାନିର ଉଦ୍ଦେଶ୍ୟ ଥିଲା । କାପ୍ତାନ୍ ଲଙ୍କାଷ୍ଟର୍ ଏହି ଦଳର ନେତା ହୋଇ ଏଚିନର ରାଜାଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରି ଜାଭାଦ୍ୱୀପର ବାଣ୍ଟାମ ନଗରରେ ଏକ ବାଣିଜ୍ୟାଳୟ ବସାଇଲେ । ପରବର୍ତ୍ତୀ ଏମାନେ ସୁମାତ୍ରା, ମଲକ୍କାସ, ବାନ୍ଦା, ଆମ୍ବୋୟନା ଓ ବାଣ୍ଟାମରୁ ଜାହାଜରେ ମରିଚ ଓ

ମସଲା ନେଇଥିଲେ । ଭାରତରେ ପ୍ରବେଶ କରିବାଲାଗି ପର୍ତ୍ତୁଗିଜମାନେ ଇଂରେଜମାନଙ୍କୁ ବିଶେଷ ବାଧା ଦେଇଥିଲେ । ୧୬୧୧ ରେ ସର୍ ହେନେରି ମିଡ୍‌ଲ୍‌ଟନ୍ ନାମକ ଏକ ଇଂରେଜ, ପର୍ତ୍ତୁଗିଜମାନେ ବାଧା ଦେଲେ ମଧ୍ୟ, ଏକ ଜାହାଜ ମାଲ କାମ୍ବେଉପକୂଳରୁ ଘେନିଯାଇ-ଥିଲେ । ୧୬୧୫ ରେ ତାପ୍ତିନଦୀ-ମୁହାଣର ନିକଟବର୍ତ୍ତୀ ସ୍ୱାଲି ନାମକ ସ୍ଥାନରେ ଏକ ଜଳଯୁଦ୍ଧ ହୋଇଥିଲା । କପ୍ତାନ୍ ବେଷ୍ଟ ପର୍ତ୍ତୁଗିଜମାନଙ୍କୁ ପରାସ୍ତ କରିଥିଲେ । ସେହି ବର୍ଷ ଇଂରେଜରାଜଦୂତ ସର୍ ଟମାସ୍ ରୋ ଇଂଲଣ୍ଡରୁ ଆସି ଭାରତରେ ବାଣିଜ୍ୟ କରିବା ସକାଶେ ବାଦସାହ ଜାହାଙ୍ଗିରଙ୍କଠାରୁ ଅନୁମତି ନେଇଥିଲେ ।

ଅମ୍ବୋୟିନାର ହତ୍ୟା :—ପୂର୍ବଦେଶ ସହିତ ବାଣିଜ୍ୟରେ ଓଲନ୍ଦାଜ-ମାନେ ଇଂରେଜମାନଙ୍କ ସଙ୍ଗେ ଭାରି ଶତ୍ରୁତା କରିଥିଲେ । ଓଲନ୍ଦାଜ-ମାନେ ୧୬୨୩ର ଫେବ୍ରୁଆରିମାସରେ ଇଂରେଜ କପ୍ତାନ୍ ଟାବାର୍ସନଙ୍କ ସହ ୯ ଜଣ ଇଂରେଜ, ୯ ଜଣ ଜାପାନୀ ଆଉ ଏକ ଜଣ ପର୍ତ୍ତୁଗିଜଙ୍କୁ ଅମ୍ବୋୟିନାଠାରେ ନିର୍ଦ୍ଦୟଭାବରେ ହତ୍ୟା କରିଥିଲେ । ଇଂରେଜରାଜ ଏଥିରେ ବିରକ୍ତ ହୋଇ ଓଲନ୍ଦାଜ ଗବର୍ଣ୍ଣମେଣ୍ଟଙ୍କୁ ଲେଖିଥିଲେ । ଓଲନ୍ଦାଜମାନେ ଅବଶେଷରେ ହତ ବ୍ୟକ୍ତିମାନଙ୍କର ଉତ୍ତରାଧିକାରି-ମାନଙ୍କୁ କ୍ଷତିପୂରଣ ହେଲା ସକାଶେ ୩୬୧୫ ପାଉଣ୍ଡ ଦେଇଥିଲେ । ଏହି ସମୟଠାରୁ ଇଂରେଜମାନେ ଭାରତୀୟ ଦ୍ୱୀପପୁଞ୍ଜ ସଙ୍ଗେ ବାଣିଜ୍ୟ କରିବାକୁ ମନ ନ ବଳାଇ ଭାରତବର୍ଷ ସଙ୍ଗେ ବାଣିଜ୍ୟ କଲେ ।

ଅନ୍ୟାନ୍ୟ ଇଉରୋପୀୟମାନଙ୍କର ଆଗମନ :—ଫ୍ରାନ୍ସର ଅଧିବାସୀ ଫରାସିମାନେ ୧୬୦୪ରେ ଏକ କମ୍ପାନି ଗଠନ କରି ଭାରତକୁ ବାଣିଜ୍ୟ କରିବା ସକାଶେ ଆସିଥିଲେ । ୧୬୧୬ରେ ଡେନମାର୍କର ଅଧିବାସୀ ଦିନାମାରମାନେ ମଧ୍ୟ ବାଣିଜ୍ୟ ସକାଶେ ଭାରତକୁ ଆସିଥିଲେ ।୧୬୯୫ରେ ସ୍କଟଲଣ୍ଡବାସୀମାନେ ଏକ କମ୍ପାନି ଗଠନ କରିଥିଲେ । କିନ୍ତୁ କମ୍ପାନି

ଗଠିତ ନ ହେଉଣୁ ତାହାର ଅସ୍ତିତ୍ୱ ଲୋପ ପାଇଥିଲା । ତତ୍ପରେ ସ୍ପେନ, ଅଷ୍ଟ୍ରିୟା, ସ୍ୱିଡେନ ଓ ପ୍ରୁସିଆର ଅଧିବାସୀମାନେ ଭାରତୀୟ ଦ୍ୱୀପପୁଞ୍ଜରେ ବାଣିଜ୍ୟ କରିବା ସକାଶେ ଆସିଥିଲେ । କିନ୍ତୁ ଏମାନେ କୌଣସି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିନାହାନ୍ତି ।

ଇଉରୋପୀୟ ଜାତିମାନଙ୍କର ଏ ଦେଶରେ କାର୍ଯ୍ୟକଳାପ ବର୍ଣ୍ଣନା କରିବାପୂର୍ବରୁ କି ହେତୁରୁ ଇଂଲଣ୍ଡରେ ଇଷ୍ଟ ଇଣ୍ଡିଆ କମ୍ପାନି ଗଠିତ ହୋଇଥିଲା ତାହାହିଁ ତଳେ ବର୍ଣ୍ଣିତ ହେଲା :—

ପୂର୍ବକାଳରେ ଓଲନ୍ଦାଜମାନେ ଭାରତବର୍ଷୀୟ ମସଲାସବୁ ଇଂଲଣ୍ଡରେ ବିକ୍ରୟ କରୁଥିଲେ । ୧୫୯୯ ଖ୍ରୀଷ୍ଟାବ୍ଦରେ ସେମାନେ ଗୋଲମରିଚର ଦର ବଢ଼ାଇଦେଇଥିଲେ । ପୂର୍ବେ ଯେଉଁ ମରିଚର ଦର ପାଉଣ୍ଡକୁ ୩ ଶିଲିଙ୍ଗ୍ ଥିଲା, ବର୍ତ୍ତମାନ ତାହା ୬ ଶିଲିଙ୍ଗ୍ ବା ୮ ଶିଲିଙ୍ଗ୍ ମୂଲ୍ୟରେ ବିକ୍ରୀତ ହେଲା । ପାଉଣ୍ଡକ ବା ଟେଲିଣ୍ଡର୍ ଅଧସେର ଓଜନ, ଏକ ଶିଲିଙ୍ଗର ମୂଲ୍ୟ ସେତେବେଳେ ପ୍ରାୟ ୫୦୯ ଥିଲା । ତହିଁ ଲଣ୍ଡନ ସହରରେ ତହଲକା ପଡ଼ିଗଲା । ଓଲନ୍ଦାଜମାନଙ୍କର ଭାରତବର୍ଷୀୟ ବାଣିଜ୍ୟରେ ଏକାଧିପତ୍ୟ ଉଠାଇଦେବା ନିମନ୍ତେ ଗୋଟିଏ କମ୍ପାନି ଗଠନ କରିବାର ପ୍ରସ୍ତାବ ହେଲା ।

ଉପରୋକ୍ତ ମସିହାର ସେପ୍ଟେମ୍ବର ମାସ ୨୨ ତାରିଖରେ ଲଣ୍ଡନର ବଣିକମାନେ ଲର୍ଡ଼ ମେୟରଙ୍କୁ ସଭାପତି କରି ଫାଉଣ୍ଡରସ୍-ହଲରେ ଏକ ସଭା କଲେ । ପ୍ରତ୍ୟକ୍ଷଭାବରେ ବାଣିଜ୍ୟ କରିବା ଲାଗି ଏକ କମ୍ପାନି ଗଠନ କରିବା ବିଷୟ ଏହି ସଭାରେ ସ୍ଥିରୀକୃତ ହେଲା । ଇଂଲଣ୍ଡର ରାଣୀ ଏଲିଜାବେଥ ମଧ୍ୟ କମ୍ପାନି ସକାଶେ ମୋଗଲସମ୍ରାଟଙ୍କ ପାଖରୁ ଅନୁମତି ନେବାପାଇଁ ସର୍ ଜନ୍ ମିଲ୍‌ଡେନ୍‌ହଲଙ୍କୁ କନଷ୍ଟାଣ୍ଟିନୋପଲ ବାଟେ ଭାରତକୁ ପଠାଇଥିଲେ । ୧୬୦୦ ମସିହା ଡିସେମ୍ବର ୩୧ ତାରିଖରେ କମ୍ପାନି ରାଜସନନ୍ଦ ପାଇଲେ ଏବଂ ଏହି କମ୍ପାନିର ନାମ

ଦଆଗଲା, "ଲଣ୍ଡନ କମ୍ପାନି" । ଏହି କମ୍ପାନିର ୧୨୫ ଜଣ ଅଂଶିଦାର ଏବଂ ୭୦,୦୦୦ ପାଉଣ୍ଡ ମୂଳଧନ ଥିଲା । ୧୬୧୨ ରେ ଏହାର ମୂଳଧନ ୪୦୦,୦୦୦ ପାଉଣ୍ଡ ହେଲା । ୧୬୩୫ ରେ 'ଅସାଡ଼ା ବଣିକ୍‌ସମାଜ' ବୋଲି ଆଉ ଗୋଟିଏ କମ୍ପାନି ସ୍ଥାପିତ ହେଲା, କିନ୍ତୁ ଏହା ୧୬୫୦ ରେ ଲଣ୍ଡନ କମ୍ପାନିସହ ମିଶିଯାଇଥିଲା । ୧୬୫୫ ରେ କେତେକଜଣ ବଣିକ ଭାରତସହ ବାଣିଜ୍ୟ କରିବା ସକାଶେ କ୍ରମୱେଲଙ୍କ ପାଖରୁ ସନନ୍ଦ ନେଇ ଏକ କମ୍ପାନି ଗଠନ କଲେ । କିନ୍ତୁ ଦୁଇବର୍ଷ ପରେ ତାହା ଲଣ୍ଡନ କମ୍ପାନିସହ ମିଶିଗଲା । ୧୬୯୮ ରେ ୨୦ ଲକ୍ଷ ପାଉଣ୍ଡ ମୂଳଧନରେ ଆଉ ଏକ କମ୍ପାନି ଗଠିତ ହେଲା। ଏମାନେ ପୂର୍ବ କମ୍ପାନିସହ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭକଲେ । ଲର୍ଡ ଗଡ଼ଲଫିନ୍ ଏହି ପ୍ରତିଦ୍ୱନ୍ଦ୍ୱିତାକୁ ଅପୋଷରେ ତୁଟି-ଦେଇଥିଲେ । ୧୭୦୧ ରେ ଲଣ୍ଡନ କମ୍ପାନିସହ ଏହି କମ୍ପାନି ମିଶିଗଲା । ନୂତନ କମ୍ପାନିର ନାମ ହେଲା "ଭାରତ ଓ ଭାରତୀୟ ଦ୍ୱୀପପୁଞ୍ଜ ସହ ବାଣିଜ୍ୟ କରିବା ସକାଶେ ଲଣ୍ଡନର ବଣିକ୍‌ସମୂହର ସମ୍ମିଳିତ କମ୍ପାନି ।"

---

## ଭାରତରେ ଇଉରୋପୀୟମାନଙ୍କର ପ୍ରାଥମିକ ଉପନିବେଶ— ପର୍ତ୍ତୁଗିଜ, ଓଲନ୍ଦାଜ, ଫରାସି, ଇଂରେଜ ଓ ଦିନାମାର ।

ପୂର୍ବେ କୁହାଯାଇଅଛି ଯେ, ଭାସ୍କୋଡ଼ିଗାମା ୧୪୯୮ ମସିହା ମଇମାସ ତା ୨୦ ରଖରେ କାଲିକଟ୍ ରାଜ୍ୟରେ ପହଞ୍ଚିଥିଲେ । କାଲିକଟର ରାଜା ଜାମୋରିନ ଅତି ସମାଦରସହ ତାହାଙ୍କୁ ଗ୍ରହଣ କରିଥିଲେ । ଆରବୀୟମାନେ ଏହାଙ୍କର ଅନିଷ୍ଟସାଧନ କରିବାଲାଗି ଚେଷ୍ଟା କରୁ-ଥିଲେ ; କିନ୍ତୁ ସେମାନେ ଜାମୋରିନଙ୍କ ଲାଗି କିଛି କରିପାରି ନ ଥିଲେ । ଭାସ୍କୋଡିଗାମା ୬ ମାସ କାଲିକଟରେ ରହି ଜାମୋରିନଙ୍କଠାରୁ ପର୍ତ୍ତୁଗାଲର ରାଜାଙ୍କ ପାଖକୁ ଖଣ୍ଡିଏ ଚିଠି ନେଇଗଲେ । ଚିଠିର ମର୍ମ

ଏହି :—"ଆପଣଙ୍କ ଦେଶର ଭାସ୍କୋଡ଼ିଗାମା ଆମ୍ଭ ରାଜ୍ୟକୁ ଆସିବାରୁ ଆମ୍ଭେ ଅତ୍ୟନ୍ତ ସନ୍ତୁଷ୍ଟ ହେଲୁଁ । ଆମ୍ଭ ଦେଶରେ ପ୍ରଚୁର ପରିମାଣରେ ଲବଙ୍ଗ, ଦାରୁଚିନି, ଅଦା, ମରିଚ ଏବଂ ବହୁମୂଲ୍ୟ ପ୍ରସ୍ତର ଅଛି । ଆମ୍ଭେ ଆପଣଙ୍କ ଦେଶରୁ କେବଳ ସୁନା, ରୂପା, ପ୍ରବାଳ ପାଇବାର ଆଶାକରୁଁ ।"

୧୫୦୨ ରେ ପର୍ତ୍ତୁଗାଲର ରାଜା ରୋମାନକାଥଲିକ୍ ଖ୍ରୀଷ୍ଟାନମାନଙ୍କର ପ୍ରଧାନ ଧର୍ମ୍ମଯାଜକ ରୋମନଗରର ପୋପଙ୍କଠାରୁ ପୂର୍ବଦେଶରେ ବାଣିଜ୍ୟ କରିବା ସକାଶେ ଅନୁମତି ପାଇଥିଲେ । ସେ ଭାସ୍କୋଡ଼ିଗାମାଙ୍କୁ ୨୦ ଖଣ୍ଡ ଜାହାଜ ଓ କେତେକ ସୈନ୍ୟ ଦେଇ ଦ୍ୱିତୀୟଥର ଭାରତକୁ ପଠାଇଲେ । ସେ କୋଚିନ ଓ କାନାନୋର ରାଜାଦ୍ୱୟଙ୍କ ସାହାଯ୍ୟରେ ଜାମୋରିନଙ୍କୁ ପରାସ୍ତ କଲେ । ଅଳ୍ପଦିନ ମଧ୍ୟରେ ପର୍ତ୍ତୁଗିଜମାନେ ଭାରତରେ କ୍ଷମତାଶାଳୀ ହୋଇଉଠିଲେ । ତହୁଁପରେ ୧୫୦୫ ରେ ଆଲମିଡ଼ା ନାମକ ଏକ ବ୍ୟକ୍ତି ୨୨ ଖଣ୍ଡ ଜାହାଜ ଓ ୧୫୦୦ ସୈନ୍ୟ ଘେନି ପ୍ରଥମ ପର୍ତ୍ତୁଗିଜ ଶାସନକର୍ତ୍ତା ହୋଇ ଭାରତକୁ ଆସିଲେ । ୧୫୦୯ ରେ ଆଲବୁକାର୍କ ନାମକ ଆଉ ଏକ ବ୍ୟକ୍ତି ଶାସନକର୍ତ୍ତା ହୋଇ ଆସିଥିଲେ । ସେ କାଲିକଟ୍ ଆକ୍ରମଣ କରି ଅକୃତକାର୍ଯ୍ୟ ହୋଇ ଗୋଆ ଅଧିକାର କରିଥିଲେ । ତହୁଁପରେ ସିଂହଳଦ୍ୱୀପ ବେଷ୍ଟନ କରି ଭାରତୀୟ ଦ୍ୱୀପପୁଞ୍ଜର ମଲକ୍କା ଅଧିକାର କରି ଶ୍ୟାମ ଓ ଭାରତୀୟ ଦ୍ୱୀପପୁଞ୍ଜରେ ବାଣିଜ୍ୟ ବିସ୍ତାର କରିଥିଲେ । ସେ ୧୫୧୫ ରେ ଗୋଆ ନଗରରେ ପ୍ରାଣତ୍ୟାଗ କରିଥିଲେ । ୧୫୨୪ ରେ ଭାସ୍କୋଡ଼ିଗାମା ତୃତୀୟଥର ଭାରତକୁ ଆସି କୋଚିନରେ ପ୍ରାଣତ୍ୟାଗ କଲେ ।

୧୫୦୦ ଠାରୁ ୧୬୦୦ ପର୍ଯ୍ୟନ୍ତ ପର୍ତ୍ତୁଗିଜମାନେ ପୂର୍ବଦେଶୀୟ ବାଣିଜ୍ୟରେ ଏକାଧିପତ୍ୟ ଲାଭ କରିଥିଲେ । କିନ୍ତୁ ସେମାନଙ୍କ ପରାକ୍ରମ କମିଯିବାରୁ ଏବଂ ସେମାନେ ବାଣିଜ୍ୟ କରୁଥିବା ସ୍ଥାନମାନଙ୍କରେ ଅତ୍ୟନ୍ତ

ଅତ୍ୟାଚାର କରୁଥିବାରୁ ରାଜ୍ୟ ସ୍ଥାପନ କରି ପାରି ନ ଥିଲେ । ୧୫୮୦ ଖ୍ରୀ: ଅ: ରେ ପର୍ତ୍ତୁଗାଲରାଜ୍ୟ ସ୍ପେନର ଅଧୀନ ହେଲା ଓ ପର୍ତ୍ତୁଗିଜମାନଙ୍କର କ୍ଷମତା ହ୍ରାସ ଲଭିଲା । କିନ୍ତୁ ୧୬୪୦ ରେ ପର୍ତ୍ତୁଗାଲ ପୁନଶ୍ଚ ସ୍ୱାଧୀନତା ଲାଭ କରିଥିଲା । ଏଥିମଧ୍ୟରେ ଓଲନ୍ଦାଜ ଓ ଇଂରେଜମାନେ ଭାରତରେ ବାଣିଜ୍ୟ ବିସ୍ତାର କରିଥିବାରୁ ପର୍ତ୍ତୁଗିଜମାନେ ଆଉ ଉନ୍ନତି କରି ପାରି ନ ଥିଲେ । ବର୍ତ୍ତମାନ ସୁଦ୍ଧା ଭାରତର ପଶ୍ଚିମ ଉପକୂଳରେ ଗୋଆ, ଦାମନ ଓ ଡିଉ ଏହି କେତେଗୋଟି ସ୍ଥାନ ଏମାନଙ୍କର ଅଧୀନରେ ଅଛି ।

ଓଲନ୍ଦାଜ ଉପନିବେଶ-ସ୍ଥାପନ :—ପୂର୍ବ ଗଳ୍ପରେ କୁହାଯାଇଅଛି ଯେ, ଓଲନ୍ଦାଜମାନେ ସପ୍ତଦଶ ଶତାବ୍ଦୀରେ ଭାରତୀୟ ଦ୍ୱୀପପୁଞ୍ଜରେ ପ୍ରାଧାନ୍ୟ ଲାଭ କରିଥିଲେ । ସେମାନେ ଫରମୋଜା ଓ ମଲକ୍କାସ୍ ଅଧିକାର କରି ୧୬୪୭ ରେ ଭାରତର ଦକ୍ଷିଣପୂର୍ବ ଉପକୂଳସ୍ଥିତ [illegible] ନାମକ ସ୍ଥାନରେ ବାଣିଜ୍ୟ ଆରମ୍ଭ କଲେ । ୧୬[illegible]୨ ରେ [illegible] ମାନ୍ଦ୍ରାଜଉପକୂଳସ୍ଥିତ ପାଲିକଟ୍ ନାମକ ସ୍ଥାନରେ ପ୍ରଥମ [illegible]ଲପ୍ ସ୍ଥାପନ କରିଥିଲେ । ୧୬୫୮ ରେ ସେମାନେ ପର୍ତ୍ତୁଗିଜ-[illegible]ଠାରୁ ସିଂହଳଦ୍ୱୀପସ୍ଥ ଜାଫନାପଟମ୍ ନାମକ ସ୍ଥାନ ଅଧିକାର [illegible] । ୧୬୬୪ ରେ ସେମାନେ ମାଲବାର ଉପକୂଳସ୍ଥ ସମସ୍ତ ପର୍ତ୍ତୁଗିଜ [illegible]ନିବେଶମାନ ଅଧିକାର କରିନେଲେ ।

ଓଲନ୍ଦାଜମାନେ ପର୍ତ୍ତୁଗିଜମାନଙ୍କ ପରି ଅତ୍ୟାଚାରୀ ଥିବାରୁ ଭାରତରେ ରାଜ୍ୟ ସ୍ଥାପନ କରି ପାରି ନ ଥିଲେ । ଇଂରେଜମାନେ ଓଲନ୍ଦାଜପ୍ରାଧାନ୍ୟ ଲୋପ କରିଥିଲେ । ୧୭୫୮ ରେ ଇଂରେଜବୀର କ୍ଲାଇବ ଏମାନଙ୍କଠାରୁ ଚନ୍ସୁରା ନଗର ଛଡ଼ାଇ ନେଇଥିଲେ । ୧୭୯୫ ଠାରୁ ୧୮୧୬ ମଧ୍ୟରେ ଇଂରେଜମାନେ ଓଲନ୍ଦାଜମାନଙ୍କଠାରୁ ଭାରତୀୟ ଦ୍ୱୀପପୁଞ୍ଜସ୍ଥ ସମସ୍ତ

ଉପନିବେଶମାନ ଅଧିକାର କରିନେଇଥିଲେ । କିନ୍ତୁ ଇଂରେଜମାନେ ୧୮୧୬ ରେ ସେମାନଙ୍କୁ ଜାଭା ଫେରାଇଦେଇଥିଲେ ଏବଂ ମଲକ୍କାଦ୍ୱୀପ ନେଇ ସୁମାତ୍ରାଦ୍ୱୀପ ଦେଇଥିଲେ । ବର୍ତ୍ତମାନ ଭାରତରେ ଓଲନ୍ଦାଜ-ମାନଙ୍କର ଅଧିକୃତ ସ୍ଥାନ ଆଉ ନାହିଁ ।

ଇଂରେଜମାନଙ୍କର ମାନ୍ଦ୍ରାଜ ଉପକୂଳରେ ଉପନିବେଶ-ସ୍ଥାପନ:—ପୂର୍ବ ଗଳ୍ପରେ କୁହାହୋଇଅଛି ଯେ, ଅମ୍ବୋୟିନାର ହତ୍ୟା-ଦିନଠାରୁ ଇଂରେଜମାନେ ଭାରତରେ ବାଣିଜ୍ୟ କରିବା ସକାଶେ ଚେଷ୍ଟା କରୁ-ଥିଲେ । ସେମାନେ ୧୬୩୨ ରେ ଗୋଲକୁଣ୍ଡାର ସୁଲତାନଙ୍କ ପାଖରୁ ସନନ୍ଦ ନେଇ ମସଲିପଟ୍ଟମରେ ଗୋଟିଏ ବାଣିଜ୍ୟାଳୟ ସ୍ଥାପନ କରିଥିଲେ । ଏଥିପୂର୍ବରୁ ସେମାନେ ଆରମଗାଁଓ ନାମକ ସ୍ଥାନରେ ଗୋଟିଏ ବାଣିଜ୍ୟା-ଳୟ ସ୍ଥାପନ କରିଥିଲେ । ଅବଶେଷରେ ୧୬୩୯ ରେ ଆରମାଗାଁଓର ଇଂରେଜ ସର୍ଦ୍ଦାର ଫ୍ରାନସିସ୍ ଡେ ସାହେବ ଚନ୍ଦ୍ରଗିରି ରାଜାଙ୍କଠାରୁ ମାନ୍ଦ୍ରାସାପଟ୍ଟମ୍ ବା ଚିନାପଟ୍ଟମ୍ ନାମକ ଏକ ସ୍ଥାନ ଖରିଦ କରି ନେଇଥିଲେ ; ଏଠାରେ ସେ ସେଣ୍ଟଜର୍ଜ ନାମକ ଦୁର୍ଗ ନିର୍ମାଣ କରି ମାନ୍ଦ୍ରାଜନଗର ସ୍ଥାପନ କରିଥିଲେ । ଭାରତରେ ଏହି ନଗରହିଁ ଇଂରେଜମାନଙ୍କର ପ୍ରଥମ ଅଧିକୃତ ସ୍ଥାନ ।

ବମ୍ବେଇ ଉପକୂଳରେ ଇଂରେଜ ଉପନିବେଶ-ସ୍ଥାପନ :—ଇଂରେଜ-ମାନେ ସ୍ୱାଲି ଯୁଦ୍ଧରେ ପର୍ତ୍ତୁଗିଜମାନଙ୍କୁ ପରାସ୍ତ କରି ପ୍ରଥମେ ୧୬୧୫ରେ ସୁରଟ ନଗରରେ ବାଣିଜ୍ୟାଳୟ ସ୍ଥାପନ କଲେ । ୧୬୬୧ରେ ଇଂଲଣ୍ଡରାଜ ଦ୍ୱିତୀୟ ଚାର୍ଲସ ପର୍ତ୍ତୁଗିଜରାଜକନ୍ୟା କାଥାରିନଙ୍କୁ ବିବାହ-କରି ଯୌତୁକସ୍ୱରୂପ ବମ୍ବେଇନଗର ପାଇଥିଲେ । ୧୬୬୮ରେ ଦ୍ୱିତୀୟ ଚାର୍ଲସ ବାର୍ଷିକ ୧୦ ପାଉଣ୍ଡ ଖଜଣାରେ ବମ୍ବେଇନଗର ଇଂରେଜ କମ୍ପାନୀକୁ ଦେଇଥିଲେ । ବମ୍ବେଇନଗର ସେ ସମୟରେ

ଗୋଟିଏ ସାମାନ୍ୟ ଗ୍ରାମମାତ୍ର ଥିଲା ; କିନ୍ତୁ ୧୬୬୪ ରେ ଯେତେବେଳେ ମରହଟ୍ଟାମାନେ ସୁରାଟନଗରକୁ ଲୁଣ୍ଠନ କଲେ ତେତେବେଳେ ଇଂରେଜମାନେ ବମ୍ବେନଗରରେ ବସତି କରି ତାହାର ଶ୍ରୀବୃଦ୍ଧି ସାଧନ କରିଥିଲେ ।

ବଙ୍ଗଳାରେ ଇଂରେଜ ଉପନିବେଶ-ସ୍ଥାପନ :—୧୬୩୪ ଖ୍ରୀ: ଅ: ପର୍ଯ୍ୟନ୍ତ ଇଂରେଜମାନେ ବଙ୍ଗଳାରେ ବାଣିଜ୍ୟକୋଠି ସ୍ଥାପନ କରି ପାରି ନ ଥିଲେ । ସେହି ବର୍ଷ ମୋଗଲସମ୍ରାଟ୍ ସେମାନଙ୍କୁ ବଙ୍ଗଦେଶରେ ବାଣିଜ୍ୟ କରିବାପାଇଁ ଅନୁମତି ଦେଲେ । ସେମାନେ ପ୍ରଥମେ ଓଡ଼ିଶାର ପିପିଲି ନାମକ ସ୍ଥାନରେ ବାଣିଜ୍ୟ ଆରମ୍ଭ କଲେ । ୧୬୪୦ରେ ସେମାନେ ହୁଗୁଳିଠାରେ ଏବଂ ୧୬୪୨ ରେ ବାଲେଶ୍ୱରରେ ବାଣିଜ୍ୟକୋଠି ସ୍ଥାପନ କରିବାକୁ ଅଧିକାର ପାଇଥିଲେ । ୧୬୪୫ ରେ ବ୍ରାଉଟନ୍ ନାମକ ଏକ ଇଂରେଜ ଡାକ୍ତର ସାହାଜାହାନଙ୍କ କନ୍ୟାକୁ ଆରୋଗ୍ୟ କରିବାରୁ ପୁରସ୍କାର ସ୍ୱରୂପ ସମସ୍ତ ବଙ୍ଗଳାରେ ବାଣିଜ୍ୟ କରିବାର ଅଧିକାର ଇଂରେଜ କମ୍ପାନି ସକାଶେ ପ୍ରାପ୍ତ ହୋଇଥିଲେ । ୧୬୮୧ ରେ ବଙ୍ଗଳାର ଇଂରେଜ କୋଠିମାନ ମାନ୍ଦ୍ରାଜଠାରୁ ବିଚ୍ଛିନ୍ନ ହୋଇ ଜଣେ ଶାସନକର୍ତ୍ତାଙ୍କ ଅଧୀନରେ ରହିଲା । ୧୬୮୬ ରେ ବଙ୍ଗଳାର ନବାବ ସାଏସ୍ତାଖାଁ ଇଂରେଜମାନଙ୍କର ବଙ୍ଗଳାରେ ଥିବା ସମସ୍ତ ବାଣିଜ୍ୟକୋଠି ସେମାନଙ୍କଠାରୁ ଛଡ଼ାଇନେଇଥିଲେ । ହୁଗୁଳିର ଇଂରେଜମାନେ ଜବ୍ ଚର୍ଣ୍ଣକଙ୍କ ଅଧୀନରେ ହୁଗୁଳିଠାରୁ ୨୬ ମାଇଲ ତଳେ ସୂତାନଟୀ ନାମକ ସ୍ଥାନରେ ବାସକରିଥିଲେ । ଏହିଠାରେ ସେମାନେ ଫୋର୍ଟଉଇଲିୟମ୍ ନାମକ ଦୁର୍ଗର ନିର୍ମାଣ ଆରମ୍ଭ କଲେ । ୧୭୦୦ ଅବ୍ଦରେ ସେଠାର ଇଂରେଜମାନେ ଆରଙ୍ଗଜେବଙ୍କ ପୁତ୍ର ଆଜିମଙ୍କଠାରୁ ସୂତାନଟୀ, କଲିକତା ଓ ଗୋବିନ୍ଦପୁର ନାମକ ତିନିଗୋଟି ଗ୍ରାମ କ୍ରୟ କଲେ । ଏହି ତିନିଗୋଟି ଗ୍ରାମ ମିଶି ବର୍ତ୍ତମାନର କଲିକତାନଗରୀ ଗଠିତ ହୋଇଅଛି ।

ଫରାସି ଓ ଦିନାମାରମାନଙ୍କ ଉପନିବେଶସ୍ଥାପନ :—ଫରାସିମାନେ ୧୬୬୪ ରେ ସୁରଟରେ, ୧୬୭୪ ରେ ପଣ୍ଡିଚେରୀରେ ଏବଂ ୧୬୮୮ରେ ଚନ୍ଦନନଗରରେ ବାଣିଜ୍ୟକୋଠି ସ୍ଥାପନ କରିଥିଲେ । ପଣ୍ଡିଚେରୀ ସେମାନଙ୍କର ଭାରତୀୟ ଉପନିବେଶମାନଙ୍କ ମଧ୍ୟରେ ପ୍ରଧାନ ସ୍ଥାନ ହୋଇଥିଲା । ସେମାନେ କ୍ରମଶଃ ଅତ୍ୟନ୍ତ ପରାକ୍ରମଶାଳୀ ହୋଇଥିଲେ । ଇଂରେଜମାନଙ୍କ ସହିତ ଏମାନଙ୍କର ଯୁଦ୍ଧବିଗ୍ରହ ବିଷୟ ପରେ କୁହାଯିବ ।

ଶ୍ରୀରାମପୁର ଦିନାମାରମାନଙ୍କ ପ୍ରଧାନ ଅଧିକୃତ ସ୍ଥାନ ଥିଲା । ୧୮୪୫ ରେ ଇଂରେଜମାନେ ଏହାକୁ ସେମାନଙ୍କଠାରୁ ଖରିଦ କରି-ଥିଲେ । ବର୍ତ୍ତମାନ ଦିନାମାରମାନଙ୍କ ଅଧିକୃତ ସ୍ଥାନ ଭାରତରେ ଆଉ ନାହିଁ ।

---

## ଇଂରେଜ ଓ ଫରାସିମାନଙ୍କ ମଧ୍ୟରେ ସମର—
## କ୍ଲାଇବ ଓ ଡୁପ୍ଲେ ।

ଇଂରେଜ ଓ ଫରାସିମାନଙ୍କ ମଧ୍ୟରେ ସମରବିଷୟ ବର୍ଣ୍ଣନା କରିବା-ପୂର୍ବେ ସେ ସମୟରେ ଦାକ୍ଷିଣାତ୍ୟର ଅବସ୍ଥା କିପରି ଥିଲା ତାହା କହିବା ଉଚିତ ।

ପୂର୍ବ ଅଧ୍ୟାୟରେ କୁହାଯାଇଅଛି ଯେ, ଇଂରେଜମାନେ ୧୬୩୯ ଖ୍ରୀ: ଅ: ରେ ମାନ୍ଦ୍ରାଜନଗର ସ୍ଥାପନ କରିଥିଲେ, ଆଉ ଫରାସିମାନେ ୧୬୭୪ ଖ୍ରୀ: ଅ: ରେ ମାନ୍ଦ୍ରାଜଠାରୁ ୧୦୦ ମାଇଲ ଦକ୍ଷିଣରେ ପଣ୍ଡିଚେରୀନଗରରେ ଉପନିବେଶ ସ୍ଥାପନ କରିଥିଲେ । ଏ ସମୟରେ ପର୍ତ୍ତୁଗିଜ, ଓଲନ୍ଦାଜ ଓ ଦିନାମାରମାନଙ୍କର କ୍ଷମତା ଏକା-ବେଳକେ ହ୍ରାସ ହୋଇଥିଲା । କେବଳ ଇଂରେଜ ଓ ଫରାସିମାନେ

ଭାରତୀୟ ବାଣିଜ୍ୟରେ ଏକାଧିପତ୍ୟ ଲାଭ କରିଥିଲେ । ଇଂରେଜମାନେ ମାନ୍ଦ୍ରାଜ, ବମ୍ବେଇ ଓ କଲିକତା ପ୍ରାପ୍ତ ହେବାରୁ ସେମାନଙ୍କ ବାଣିଜ୍ୟର ଶ୍ରୀବୃଦ୍ଧି ହୋଇଥିଲା । ଫରାସିମାନେ ମଧ୍ୟ ମାନ୍ଦ୍ରାଜ, ବମ୍ବେଇ ଓ ବଙ୍ଗଳାରେ ଉପନିବେଶ ସ୍ଥାପନ କରିଥିଲେ । ପଣ୍ଡିଚେରୀ ଫରାସି-ଉପନିବେଶମାନଙ୍କର କେନ୍ଦ୍ରସ୍ଥଳ ଥିଲା । ଇଂରେଜ ଓ ଫରାସିମାନେ ଅନେକ ବର୍ଷ ପର୍ଯ୍ୟନ୍ତ ଶାନ୍ତି-ଭାବରେ ବାଣିଜ୍ୟ କରିଥିଲେ । ୧୭୪୧ ଖ୍ରୀ ଅ: ରେ ଡୁପ୍ଳେ ନାମକ ଜଣେ ଦୂରଦର୍ଶୀ, ଦକ୍ଷ ଫରାସି ଶାସନକର୍ତ୍ତା ଭାରତକୁ ଆସିଲେ ।



ଡୁପ୍ଲେ ।

୧୭୦୭ ଖ୍ରୀ: ଅ: ପରେ ଦାକ୍ଷିଣାତ୍ୟର ଅବସ୍ଥା:—୧୭୦୭ ରେ ଆରଙ୍ଗଜେବଙ୍କ ମୃତ୍ୟୁ ହେଲା । ତତ୍ପରେ ଦାକ୍ଷିଣାତ୍ୟ-ସ୍ୱାଧୀନ ହେବାକୁ ଲାଗିଲା । ହାଇଦ୍ରାବାଦରେ ନିଜାମ ଉଲ୍‌ମୁଲ୍‌କ୍ ଗୋଟିଏ ସ୍ୱାଧୀନ ରାଜ୍ୟ ସ୍ଥାପନ କଲେ । କର୍ଣ୍ଣାଟ ପ୍ରଦେଶ ନିଜାମଙ୍କ ପ୍ରତିନିଧିଦ୍ୱାରା ଶାସିତ ହେଉଥିଲା । ସେ ନବାବ୍ ନାମରେ ଅଭିହିତ ଥିଲେ । କ୍ରମେ ସେ ସ୍ୱାଧୀନ ହୋଇଥିଲେ । ତ୍ରିଚିନାପଲ୍ଲୀ, ତାଞ୍ଜୋର ଓ ମହୀସୁରରେ ତିନିଗୋଟି ହିନ୍ଦୁରାଜ୍ୟ ସ୍ଥାପିତ ହୋଇଥିଲା । ଦିଲ୍ଲୀ ସମ୍ରାଟଙ୍କ କ୍ଷମତା ହ୍ରାସ ହେବାରୁ ଇଂରେଜ ଓ ଫରାସିମାନେ ପ୍ରାଧାନ୍ୟସ୍ଥାପନଲାଗି ଚେଷ୍ଟା କରୁଥିଲେ ।

**ପ୍ରଥମ କର୍ଣ୍ଣାଟସମର, ୧୭୪୬-୪୮ :—** ଦାକ୍ଷିଣାତ୍ୟର ଅବସ୍ଥା ଯେତେବେଳେ ଏହିପରି ଥିଲା ସେତେବେଳେ ଇଉରୋପରେ ଇଂରେଜ ଓ ଫରାସି ମଧ୍ୟରେ ଘୋର ଯୁଦ୍ଧ ଲାଗି ହେଲା । ଡୁପ୍ଲେ ସେ ସମୟରେ ଭାରତବର୍ଷରେ ଫରାସିଶାସନକର୍ତ୍ତା ଥିଲେ, ଏବଂ କ୍ଲାଇବ ମାନ୍ଦ୍ରାଜରେ ସାମାନ୍ୟ କିରାନି ଥିଲେ । ୧୭୪୬ ରେ ଲାବର୍ଦୋନା ନାମକ ଏକ ଫରାସିସେନାପତି କେତେକ ରଣତରୀ ନେଇ ମାନ୍ଦ୍ରାଜଉପକୂଳରେ ଉପସ୍ଥିତ ହେଲେ । ମାନ୍ଦ୍ରାଜ ଅଧିକୃତ ହେଲା । କ୍ଲାଇବ ଓ ଅଭ କେତେକ ଇଂରେଜ ସେଣ୍ଟ ଡେବିଡ୍ ଦୁର୍ଗରେ ଅଶ୍ରୟ ଗ୍ରହଣ କଲେ । କର୍ଣ୍ଣାଟର ନବାବ ଦଶହଜାର ସୈନ୍ୟ ଘେନି ମାନ୍ଦ୍ରାଜରୁ ଫରାସିମାନଙ୍କୁ ତଡ଼ିଦେବାଲାଗି ଯାଇଥିଲେ, କିନ୍ତୁ ଅକୃତକାର୍ଯ୍ୟ ହେଲେ । ୧୭୪୮ ରେ ବସ୍କାବେନ୍ ଇଂଲଣ୍ଡରୁ ଆସି ଜଳପଥରେ, ଏବଂ ମେଜର ଲରେନ୍ସ ସ୍ଥଳପଥରେ ପଣ୍ଡିଚେରୀ ଅକ୍ରମଣ କଲେ । କିନ୍ତୁ ସେମାନଙ୍କର ସମସ୍ତ ଚେଷ୍ଟା ନିଷ୍ଫଳ ହେଲା । ସେହି ବର୍ଷ ଇଉରୋପରେ ଉଭୟ ଜାତି ମଧ୍ୟରେ ସନ୍ଧି ସ୍ଥାପିତ ହେବାରୁ ଫରାସିମାନେ ଇଂରେଜମାନଙ୍କୁ ମାନ୍ଦ୍ରାଜ ଫେରାଇ ଦେଇଥିଲେ ।

**ଦ୍ୱିତୀୟ କର୍ଣ୍ଣାଟସମର:—** ପ୍ରଥମ କର୍ଣ୍ଣାଟସମରରେ ଡୁପ୍ଲେ ଜୟୀ ହେବାରୁ ତାଙ୍କର ରାଜ୍ୟ ସ୍ଥାପନ କରିବାର ଆଶା ବଳବତୀ ହୋଇଥିଲା । ଆଶା ପୂର୍ଣ୍ଣ କରିବାର ସୁବିଧା ମଧ୍ୟ ମିଳିଗଲା । ୧୭୪୮ ରେ ହାଇଦ୍ରାବାଦର ନିଜାମ ଉଲ୍‌ମୁଲକ୍ ମରିଯିବାରୁ ଦାକ୍ଷିଣାତ୍ୟରେ ସୁବାଦାରୀ ପାଇଁ ନାଜିରଜଙ୍ଗ ଓ ତାଙ୍କ ପୁତୁରା ମଜଫରଜଙ୍ଗ ପ୍ରତିଦ୍ୱନ୍ଦ୍ୱୀ ହେଲେ । ଏହି ସମୟରେ ପୂର୍ବବର୍ତ୍ତୀ ନବାବଙ୍କର ଏକ ଜାମାତା ଚନ୍ଦାସାହେବ ଅର୍କଟର ନବାବପଦପାଇଁ ଦାବୀ କରିଥିଲେ । ମଜଫରଜଙ୍ଗ ଓ ଚନ୍ଦାସାହେବ ଡୁପ୍ଲେଙ୍କ ସାହାଯ୍ୟପ୍ରାର୍ଥୀ ହେଲେ । ମଜଫର, ଚନ୍ଦାସାହେବ ଏବଂ ଫରାସିମାନେ ମିଳିତ ହୋଇ କର୍ଣ୍ଣାଟର ବୃଦ୍ଧ ନବାବ

ଅନୱାରଉଦ୍ଦିନଙ୍କୁ ଗୋଟିଏ ଯୁଦ୍ଧରେ ପରାସ୍ତ କରି ହତ୍ୟା କଲେ । ମଜଫର ଆପଣାଙ୍କୁ ଦାକ୍ଷିଣାତ୍ୟର ସୁବାଦାର ବୋଲି ଘୋଷଣା କଲେ, ଏବଂ ଚନ୍ଦାସାହେବଙ୍କୁ କର୍ଣ୍ଣାଟର ନବାବ କଲେ । ଅନୱାରଉଦ୍ଦିନଙ୍କ ପୁତ୍ର ମହମ୍ମଦଅଲ୍ଲି ଏବଂ ନାଜିରଜଙ୍ଗ ଇଂରେଜମାନଙ୍କର ସାହାଯ୍ୟ ପ୍ରାର୍ଥନା କଲେ । ଇଂରେଜମାନେ ସାହାଯ୍ୟ ଦେବାରୁ ଚନ୍ଦାସାହେବ ଓ ମଜଫରଜଙ୍ଗ ପରାଜିତ ହେଲେ । ମଜଫର ବନ୍ଦୀ ହେଲେ । ନାଜିରଜଙ୍ଗ ନିଜକୁ ଦାକ୍ଷିଣାତ୍ୟର ସୁବାଦାର ବୋଲି ଘୋଷଣା କରି ମହମ୍ମଦ-ଅଲ୍ଲିଙ୍କୁ କର୍ଣ୍ଣାଟର ନବାବ କଲେ । କିନ୍ତୁ ନାଜିରଜଙ୍ଗ ଅଳ୍ପଦିନ ପରେ ହତ ହେବାରୁ ଫରାସିମାନେ ମଜଫରଜଙ୍ଗଙ୍କୁ ମୁକ୍ତି ଦେଇ ନିଜାମ କଲେ ଏବଂ ଚନ୍ଦାସାହେବଙ୍କୁ କର୍ଣ୍ଣାଟର ନବାବ କଲେ । ମାତ୍ର ମଜଫରଜଙ୍ଗ ତହିଁର ଅଳ୍ପଦିନପରେ ନିହତ ହେବାରୁ ଫରାସିମାନେ ତାଙ୍କର ଭ୍ରାତା ସଲାବତଜଙ୍ଗଙ୍କୁ ନିଜାମ କରିଥିଲେ ; ଏହିରୂପେ ଫରାସିମାନେ ଦାକ୍ଷି-ଣାତ୍ୟରେ ନିଜ କ୍ଷମତା ବଜାୟ ରଖିଥିଲେ ।

ଇଂରେଜମାନେ ଦେଖିଲେ ଯେ ଦାକ୍ଷିଣାତ୍ୟରେ ସେମାନଙ୍କର ସମସ୍ତ ଆଶାଭରସା ଲୁପ୍ତ ହେଲା । ସେମାନଙ୍କର ଆଶ୍ରିତ ମହମ୍ମଦ-ଅଲ୍ଲି କର୍ଣ୍ଣାଟରାଜଧାନୀ ଅର୍କଟରୁ ତାଡ଼ିତ ହୋଇ ତ୍ରିଚିନାପଲ୍ଲୀରେ ଆଶ୍ରୟ ନେଲେ । ଚନ୍ଦାସାହେବ ଅନେକ ସୈନ୍ୟ ନେଇ ତ୍ରିଚିନାପଲ୍ଲୀ ଅବରୋଧ କଲେ । ଏହି ସଙ୍କଟସମୟରେ କ୍ଲାଇବ ନାମକ ଏକ ବ୍ୟକ୍ତି ଇଂରେଜମାନଙ୍କର ମାନରକ୍ଷା କରିଥିଲେ । ସେ ସେତେବେଳେ ସାମାନ୍ୟ କିରାନି ଥିଲେ । ସେ କିରାନିଗିରି ଛାଡ଼ିଦେଇ ଅସ୍ତ୍ରଧାରଣ କରିବାଲାଗି ଦୃଢ଼ ସଙ୍କଳ୍ପ ହେଲେ । କ୍ଲାଇବ ଅର୍କଟନଗର ଆକ୍ରମଣ କରିବାଲାଗି ପ୍ରସ୍ତାବ କଲେ । ପ୍ରସ୍ତାବ ଗ୍ରାହ୍ୟ ହେଲା । ୧୭୫୧ ରେ କ୍ଲାଇବ କେବଳ ୫୦୦ ସୈନ୍ୟ ନେଇ ଝଡ଼ି ଓ ବଜ୍ରପାତ ମଧ୍ୟଦେଇ ଅର୍କଟ ଦୁର୍ଗ ଅଧିକାର କଲେ । ଏହା ଶୁଣି ଚନ୍ଦାସାହେବ ଦଶହଜାର

ସୈନ୍ୟ ପଠାଇଥିଲେ । କିନ୍ତୁ କ୍ଲାଇବ ଅତ୍ୟନ୍ତ ସାହସସହିତ ୫୦ ଦିନ ଧୈର୍ଯ୍ୟନ୍ତ ଦୁର୍ଗରକ୍ଷା କରି ଚନ୍ଦାସାହେବଙ୍କ ସୈନ୍ୟମାନଙ୍କୁ ତଡ଼ିଦେଲେ । ଏହାପରେ କ୍ଲାଇବ ଆଉ ନୂତନ ଇଂରେଜ ଓ ମରହଟ୍ଟାସୈନ୍ୟସହ ମିଳିତ ହୋଇ ଦୁଇଥର ଚନ୍ଦାସାହେବଙ୍କୁ ପରାସ୍ତ କଲେ । ତ୍ରିଚିନାପଲ୍ଲୀ-ଅବରୋଧକାରୀମାନେ ନିଜେ କ୍ଲାଇବଙ୍କ ସୈନ୍ୟଦ୍ୱାରା ଅବରୁଦ୍ଧ ହେଲେ ଏବଂ ପରେ ଆତ୍ମସମର୍ପଣ କଲେ । ଇଂରେଜମାନଙ୍କର ମୁଖ୍ୟାତି ଚତୁ-ଦିଗରେ ବିସ୍ତୃତ ହେଲା । ମହମ୍ମଦଅଲ୍ଲୀ ଅର୍କଟଗଦିରେ ପୁନର୍ବାର ବସିଲେ । ଏହିରୂପେ ଫରାସିମାନେ କର୍ଣ୍ଣାଟରେ ପ୍ରାପ୍ତ ସମସ୍ତ କ୍ଷମତା ହରାଇଥିଲେ ।

ଡୁପ୍ଲେ ଫରାସିମାନଙ୍କର ଖ୍ୟାତି ପୁନରୁଦ୍ଧାର କରିବାଲାଗି ଯଥାସାଧ୍ୟ ଚେଷ୍ଟା କରିଥିଲେ, କିନ୍ତୁ ଫରାସି-ଗବର୍ଣ୍ଣମେଣ୍ଟ ତାଙ୍କ ପ୍ରତି ଅସନ୍ତୁଷ୍ଟ ହୋଇ ତାଙ୍କୁ ୧୭୫୪ ରେ ଡାକିପଠାଇଲେ । ସେ ନିରାଶହୃଦୟରେ ନିଜ ଦେଶକୁ ଫେରିଗଲେ ଏବଂ ଜୀବନର ଅବଶିଷ୍ଟାଂଶ ଦେଶ-ହିତ-ସାଧନରେ କଟାଇଥିଲେ ।

ତୃତୀୟ କର୍ଣ୍ଣାଟସମର :—୧୭୫୮ ରେ ଫରାସିମାନେ ଆଉଥରେ ସେମାନଙ୍କର ଭାଗ୍ୟ ପରୀକ୍ଷା କରିବା ସକାଶେ ଚେଷ୍ଟା କରିଥିଲେ । ଏହି ସମୟରେ ଲାଲି ନାମକ ଏକ ବ୍ୟକ୍ତି ଫରାସିଶାସନକର୍ତ୍ତା ହୋଇ କେତେକଙ୍କଣ୍ଡ ରଣତରୀସହ ଭାରତରେ ଉପସ୍ଥିତ ହୋଇଥିଲେ । ସେ ଇଂରେଜମାନଙ୍କର ସେଣ୍ଟଡେବିଡ଼୍ ଦୁର୍ଗ ଅଧିକାର କରି ଉତ୍ତର-ସରକାରର ଅଭ୍ ଜଣେ ଫରାସିସେନାପତି ବୁସିଙ୍କୁ ମାନ୍ଦ୍ରାଜ ଆକ୍ରମଣ କରିବାଲାଗି ଆଦେଶ ଦେଲେ । ଲାଲି ମାନ୍ଦ୍ରାଜ ଅବରୋଧ କଲେ । ୨ ମାସ ଅବରୋଧରେ ମୁଦ୍ଧା ଇଂରେଜମାନେ ଆତ୍ମସମର୍ପଣ କଲେ ନାହିଁ । ୧୭୫୯ରେ ବଙ୍ଗଳାରୁ କେତେକଖଣ୍ଡ ରଣତରୀ ଆସିବାରୁ ଲାଲି ଅବରୋଧ ତ୍ୟାଗ କଲେ । ସେ ଇଂରେଜମାନଙ୍କୁ ପରାସ୍ତ କରିବା ପାଇଁ ନାନାପ୍ରକାର ଚେଷ୍ଟା କରିଥିଲେ । ୧୭୬୦ ରେ ସର୍ ଆୟିରକୁଟ୍ ନାମକ

ଏକ ଇଂରେଜ ସେନାପତି ଶାଣ୍ଡିଖାଦ୍ ଯୁଦ୍ଧରେ ଲାଲିଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରି ପଣ୍ଡିଚେରୀ ଅବରୋଧ କଲେ । ଫରାସିମାନେ ଅନାହାରପୀଡ଼ିତ ହୋଇ ପରବର୍ଷ ଇଂରେଜମାନଙ୍କୁ ପଣ୍ଡିଚେରୀ ଅର୍ପଣ କଲେ । ଉତ୍ତାରେ ସନ୍ଧି ହେବାରୁ ଫରାସିମାନେ ପଣ୍ଡିଚେରୀ ପୁନଃ ପ୍ରାପ୍ତ ହେଲେ । ଫରାସି-ମାନଙ୍କର କ୍ଷମତା ଏକାବେଳକେ ଚୂର୍ଣ୍ଣୀଭୂତ ହେଲା । ସେମାନଙ୍କର ଭାରତରେ ରାଜ୍ୟସ୍ଥାପନର ଆଶା ଏହିଠାରୁ ଲୋପ ପାଇଲା ।

---

ପଲାଶିଯୁଦ୍ଧ—କ୍ଲାଇବ ।

୧୭୦୭ ଠାରୁ ୧୭୫୬ ପର୍ଯ୍ୟନ୍ତ ବଙ୍ଗ-ଶାସନକର୍ତ୍ତାମାନଙ୍କ ବିବରଣ —ଔରଙ୍ଗଜେବଙ୍କ ମୃତ୍ୟୁସମୟରେ ମୁର୍ଶିଦକୁଲିଖାଁ ନାମକ ଏକ ବ୍ୟକ୍ତି ବଙ୍ଗଳାର ନବାବ ଥିଲେ । ସେ ପ୍ରଥମେ ବ୍ରାହ୍ମଣ ଥିଲେ, କିନ୍ତୁ ପରେ ମୁସଲମାନ ହେଲେ । ସେ ଢାକାରୁ ମୁର୍ଶିଦାବାଦକୁ ରାଜଧାନୀ ଉଠାଇଆଣିଥିଲେ । ମୁର୍ଶିଦାବାଦ ନିକଟବର୍ତ୍ତୀ କାସିମବଜାରରେ ଇଂରେଜ, ଫରାସି ଓ ଦିନାମାର-ମାନଙ୍କର ବାଣିଜ୍ୟ କୋଠି ଥିଲା । କଲିକତା ଇଂରେଜ-ମାନଙ୍କର, ଚନ୍ଦନନଗର ଫରାସି-ମାନଙ୍କର ଓ ଶ୍ରୀରାମପୁର ଦିନାମାର-ମାନଙ୍କର ବାଣିଜ୍ୟର କେନ୍ଦ୍ରସ୍ଥଳ ଥିଲା । ମୁର୍ଶିଦକୁଲିଖାଁ ୨୧ ବର୍ଷ ସୁଶାସନରେ ବଙ୍ଗଦେଶ



କ୍ଲାଇବ ।

ଶାସନ କରି ପ୍ରାଣତ୍ୟାଗକଲେ । ତାଙ୍କ ଅନ୍ତେ ତାଙ୍କ ପୁଅ ଓ ତହିଁପରେ ତାଙ୍କ ନାତି ବଙ୍ଗଦେଶର ଶାସନକର୍ତ୍ତା ହେଲେ । ୧୭୪୦ରେ ଅଲିବର୍ଦ୍ଦିଖାଁ ନାମକ ଏକ ବ୍ୟକ୍ତି ଦଗଲାରେ ନବାବପଦ ଅଧିକାର କଲେ । ଏହାଙ୍କ ଅମଳରେ ମରହଟ୍ଟାମାନେ ବଙ୍ଗଦେଶ ଲୁଣ୍ଠନ କରିବାରୁ କଲିକତାବାସୀମାନେ ନବାବଙ୍କ ଅନୁମତି ନେଇ ୧୭୪୨ ରେ ଏକ ଖାଲ ଖୋଳିଥିଲେ । ଏହାକୁ ବର୍ତ୍ତମାନ ପର୍ଯ୍ୟନ୍ତ ମରହଟ୍ଟାଖାଲ କୁହାଯାଏ ।

ଅଲିବର୍ଦ୍ଦିଖାଁ ୧୭୫୬ ରେ ପ୍ରାଣତ୍ୟାଗ କଲେ । ତାଙ୍କର ନାତି ସୁରାଜଉଦ୍ଦୌଲା ତାଙ୍କ ଅନ୍ତେ ନବାବ ହେଲେ । ସେତେବେଳେ ତାଙ୍କର ବୟସ ୧୮ ବର୍ଷ ମାତ୍ର ହୋଇଥିଲା । ସୁରାଜ ଅଳ୍ପ ବୟସରେ ନବାବ ହେବାରୁ ଅତ୍ୟନ୍ତ ଗର୍ବିତ ହୋଇଉଠିଲେ । ତାଙ୍କର ସ୍ୱଭାବ ଅତ୍ୟନ୍ତ ଚଞ୍ଚଳ ଥିଲା । ଏହି ସମୟରେ ଢାକାର ଶାସନକର୍ତ୍ତା ରାଜବଲ୍ଲଭଙ୍କ ପୁତ୍ର କୃଷ୍ଣଦାସ ବହୁଧନ ସଞ୍ଚୟ କରିଥିଲେ । ସେ ନବାବଙ୍କ ଭୟରେ କଲିକତାକୁ ପଳାଇଆସି ଇଂରେଜମାନଙ୍କର ଆଶ୍ରୟ ନେଲେ । ସୁରାଜ କୃଷ୍ଣଦାସଙ୍କୁ ଫେରାଇଦେବାଲାଗି କଲିକତାର ଇଂରେଜମାନଙ୍କୁ ଆଦେଶ ଦେଲେ । ଇଂରେଜମାନେ ଶରଣାର୍ଥୀକୁ ଅର୍ପଣ କରିବାଲାଗି ଅସମ୍ମତି ପ୍ରକାଶ କଲେ । ଏଣୁ ସୁରାଜ ରାଗାନ୍ୱିତ ହୋଇ ଅନେକ ସୈନ୍ୟ ସେନା କଲିକତା ଆକ୍ରମଣ କଲେ । ଅନେକ ଇଂରେଜ ନଦୀବାଟେ ପଳାଇଗଲେ । ଅବଶିଷ୍ଟ ୧୪୬ ଜଣ ଆତ୍ମସମର୍ପଣ କରିଥିଲେ । ନବାବ ସେମାନଙ୍କୁ ଛାଡିଦେବାଲାଗି ଅଙ୍ଗୀକାର କରିଥିଲେ । କିନ୍ତୁ କଥିତ ଅଛି ଯେ ତାଙ୍କର କର୍ମଚାରୀମାନେ ସେମାନଙ୍କୁ ସେହି ରାତିରେ ଫୋର୍ଟ ଉଇଲିୟମ୍ ଦୁର୍ଗର ଏକ ଅପ୍ରଶସ୍ତ କୋଠରିରେ ନବାବଙ୍କ ଆଜ୍ଞାନୁସାରରେ ବନ୍ଦ କରି ରଖିଥିଲେ । ଏହି କୋଠରି ୧୮ ଫୁଟ ଦୀର୍ଘ ଏବ ଏଥିରେ କେବଳ ଦୁଇଗୋଟି ଝରକା ଥିଲା । ତହିଁପରଦିନ

ଦେଖାଗଲା ଯେ ପୂର୍ବୋକ୍ତ ବନ୍ଦୀମାନଙ୍କ ମଧ୍ୟରୁ କେବଳ ୨୩ ଜଣ ଜୀବିତ ଅଛନ୍ତି । ଏହାକୁ "ଅନ୍ଧକୂପହତ୍ୟା" କହନ୍ତି । ଏହା ୧୭୫୬ ରେ ଘଟିଥିଲା ।

ଏହି ଶୋଚନୀୟ ବାର୍ତ୍ତା ମାନ୍ଦ୍ରାଜରେ ପହୁଞ୍ଚିବାକ୍ଷଣି ଇଂରେଜମାନେ ତତ୍କ୍ଷଣାତ୍ କ୍ଲାଇଭଙ୍କୁ ସୈନ୍ୟସହ ସ୍ଥଳପଥରେ ଏବଂ ୱାଟ୍‌ସନ୍‌ଙ୍କୁ ଜଳପଥରେ କଲିକତାକୁ ପଠାଇଲେ । ସେମାନେ ଡିସେମ୍ବରମାସରେ କଲିକତାରେ ପହୁଞ୍ଚି ୧୭୫୭ ର ପ୍ରଥମ ଭାଗରେ କଲିକତା ଅଧିକାର କଲେ । ସୁରାଜ ସନ୍ଧି ସ୍ଥାପନ କଲେ ଏବଂ କ୍ଷତିପୂରଣ ପାଇଁ ଅନେକ ଟଙ୍କା ଦେଲେ ।

ପଲାସିଯୁଦ୍ଧ :—ନବାବ ଓ ଇଂରେଜ ମଧ୍ୟରେ ଏହି ସନ୍ଧି ଅନେକ ଦିନ ପର୍ଯ୍ୟନ୍ତ ରହି ନ ଥିଲା । ନବାବ ଇଂରେଜଙ୍କୁ ଓ ସ୍ୱଦେଶର ପ୍ରଧାନ ପ୍ରଧାନ ବ୍ୟକ୍ତିଙ୍କୁ ଅସନ୍ତୁଷ୍ଟ କରାଇଥିଲେ । ସୁରାଜଉଦ୍ଦୌଲାଙ୍କ ସେନାପତି ମିରଜାଫରଙ୍କୁ ବଙ୍ଗର ସିଂହାସନ ଦେବାଲାଗି ଗୋଟିଏ ଷଡ଼ଯନ୍ତ୍ର ହୋଇଥିଲା । କ୍ଲାଇଭ ଏହି ଷଡ଼ଯନ୍ତ୍ରରେ ଯୋଗ ଦେଇଥିଲେ । ନବାବ ପଲାସିକ୍ଷେତ୍ରରେ ବହୁସଂଖ୍ୟକ ସୈନ୍ୟ ଏକତ୍ର କରିଥିଲେ । କ୍ଲାଇଭ ଅଳ୍ପ ସୈନ୍ୟ ଘେନି ସେଠାରେ ଉପସ୍ଥିତ ହେଲେ । ୧୭୫୭ ଖ୍ରୀ: ଅ: ଜୁନ ମାସ ୨୩ ତାରିଖରେ ଯୁଦ୍ଧ ହେଲା ।


ସୁରାଜଉଦ୍ଦୌଲା ।

ସୁରାଜଙ୍କ ବିଶ୍ୱସ୍ତ ସେନାପତି ମୀର୍‌ମଦନ୍ ହତ ହେବାରୁ ସୁରାଜ ଯୁଦ୍ଧକ୍ଷେତ୍ର ପରିତ୍ୟାଗ କଲେ । ତାଙ୍କର ସୈନ୍ୟମାନେ ଇତସ୍ତତଃ ହେଲେ । ଏଣୁ କ୍ଲାଇବ ଅକ୍ଲେଶରେ ଜୟୀ ହେଲେ । ମିରଜାଫର ଏତେବେଳଯାଏ କୌଣସି ପକ୍ଷ ଗ୍ରହଣ କରି ନ ଥିଲେ । ବର୍ତ୍ତମାନ ସେ କ୍ଲାଇବଙ୍କ ସଙ୍ଗେ ଯୋଗ ଦେଲେ । କ୍ଲାଇବ ତାଙ୍କୁ ବଙ୍ଗଳାର ନବାବ ବୋଲି ଘୋଷଣା କଲେ । ସୁରାଜ କେତେକଦିନପରେ ଧୃତ ହୋଇ ମିରଜାଫରଙ୍କ ପୁତ୍ର-ଦ୍ୱାରା ନିହତ ହେଲେ । ଏହିଦିନଠାରୁ ଇଂରେଜମାନଙ୍କର କ୍ଷମତା ବଙ୍ଗଳାରେ ଦୃଢ଼ୀଭୂତ ହେଲା ।

---

## ବଙ୍ଗ, ବିହାର ଓ ଓଡ଼ିଶାର ଦେୱାନି—ମିରକାସିମ ଓ ଦ୍ୱିଶାସନପ୍ରଣାଳୀ ।

ପୂର୍ବ ଗଳ୍ପରେ କୁହାଯାଇଅଛି ଯେ ପଲାସିଯୁଦ୍ଧ ୧୭୫୭ ର ଜୁନ ମାସ ୨୩ ତାରିଖରେ ହୋଇଥିଲା । ଏହି ଦିନକୁ ଭାରତରେ ବ୍ରିଟିଶ-ସାମ୍ରାଜ୍ୟସ୍ଥାପନର ପ୍ରଥମ ଦିନ ବୋଲି ଜ୍ଞାନ କରିବାକୁ ହେବ । କ୍ଲାଇବ ଦିଲ୍ଲୀସମ୍ରାଟଙ୍କ ପାଖରୁ ଆଦେଶ ଆଣି ମିରଜାଫରଙ୍କୁ ବଙ୍ଗଳାର ନବାବ କଲେ । କମ୍ପାନି ଓ କମ୍ପାନିର କର୍ମଚାରୀମାନେ ମିରଜାଫରଙ୍କ ପାଖରୁ ପ୍ରଚୁର ଟଙ୍କା ନେଇଥିଲେ । କଥିତ ଅଛି ମୋଟରେ ସେମାନେ ୨୨୧୨୨୫୦୦ ଟଙ୍କା ଦାବି କରିଥିଲେ । କିନ୍ତୁ ରାଜକୋଷରେ ଏତେ ଟଙ୍କା ନ ଥିବାରୁ ସେମାନେ ଏହି ଟଙ୍କାର ଅର୍ଦ୍ଧମାତ୍ର ପାଇଥିଲେ । ୧୭୫୭ ରେ କମ୍ପାନି ନବାବଙ୍କଠାରୁ କଲିକତାର ଚତୁଃପାର୍ଶ୍ୱବର୍ତ୍ତୀ ସ୍ଥାନମାନଙ୍କର ଜମିଦାରୀ ସ୍ୱତ୍ୱ ପାଇଥିଲେ । ଏହା ବର୍ତ୍ତମାନ ଚବିଶପ୍ରଗଣା ନାମରେ ଅଭିହିତ ।

୧୭୫୮ ରେ ଇଷ୍ଟଇଣ୍ଡିଆ କମ୍ପାନିର ଡିରେକ୍ଟରମାନେ କ୍ଲାଇବଙ୍କୁ

ବଙ୍ଗଦେଶସ୍ଥ କମ୍ପାନିଙ୍କ ଉପନିବେଶମାନଙ୍କର ଗବର୍ଣ୍ଣର ହେଲେ । ଏହି ସମୟରେ ଦୁଇଗୋଟି ଶକ୍ତି ଇଂରେଜମାନଙ୍କର ବିରୁଦ୍ଧାଚରଣ କରୁଥିଲେ—ଦକ୍ଷିଣରେ ଫରାସିମାନେ, ଆଉ ଉତ୍ତରପଶ୍ଚିମରେ ସମ୍ରାଟ୍ ସାହଆଲମ୍ । ଫରାସିମାନଙ୍କର କ୍ଷମତା କିରୂପେ ଚୂର୍ଣ୍ଣୀଭୂତ ହେଲା ତାହା ପୂର୍ବବର୍ତ୍ତୀ ଗଳ୍ପରେ ବର୍ଣ୍ଣିତ ହୋଇଅଛି । ବର୍ତ୍ତମାନ ତାହା କହିବା ଅନାବଶ୍ୟକ । ସମ୍ରାଟ୍ ସାହଆଲମ୍ ଅଫଗାନ ଓ ମରହଟ୍ଟା ସୈନ୍ୟ ଘେନି ଏବଂ ଅଯୋଧ୍ୟାନବାବଙ୍କ ସହ ମିଳିତ ହୋଇ ବଙ୍ଗଳାଅଡ଼କୁ ଅଗ୍ରସର ହେଲେ । କ୍ଲାଇବ ୪୫୦ ଇଉରୋପୀୟ ସୈନ୍ୟ ଓ ୨୫୦୦ ସିପାହି ସୈନ୍ୟ ଘେନି ଯାତ୍ରା କରି ସମ୍ରାଟଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କଲେ ।

୧୭୬୦ ରେ କ୍ଲାଇବ ବିଲାତ ଯାତ୍ରା କଲେ ଏବଂ ୧୭୬୪ ପର୍ଯ୍ୟନ୍ତ



କୋମ୍ପାନିଙ୍କର ଦରବାର ବାଦଶାହଙ୍କଠାରୁ ଦେବାନି ପାଇବା ।

ସେଠାରେ ଥିଲେ । ଏହି ପଞ୍ଚବର୍ଷ ମଧ୍ୟରେ ବଙ୍ଗଳାରେ ପୁଣି ଗୋଳ-

ମାଲ ହେଲା । କମ୍ପାନିର କର୍ମ୍ମକର୍ତ୍ତାମାନେ ଧନଲାଳସାରେ ୧୭୬୧ ରେ ମିରଜାଫରଙ୍କୁ ପଦଚ୍ୟୁତ କରି ତାଙ୍କର ଜାମାତା ମୀରକାସିମଙ୍କୁ ନବାବ କଲେ । ପୁରସ୍କାରସ୍ୱରୂପ କମ୍ପାନି ବର୍ଦ୍ଧମାନ, ମେଦିନୀପୁର ଓ ଚଟ୍ଟଗ୍ରାମ ପ୍ରାପ୍ତ ହେଲେ ଓ କମ୍ପାନିର କର୍ମ୍ମକର୍ତ୍ତାମାନେ ପ୍ରଚୁର ଟଙ୍କା ପାଇଥିଲେ । ମିରକାସିମ ନବାବ ହୋଇ ସ୍ୱାଧୀନ ହେବାକୁ ଚେଷ୍ଟା କଲେ । ସେ ମୁର୍ଶିଦାବାଦରୁ ମୁଙ୍ଗେରକୁ ରାଜଧାନୀ ଉଠାଇନେଇଥିଲେ ଏବଂ ସ୍ୱସୈନ୍ୟମାନଙ୍କୁ ପାଶ୍ଚାତ୍ୟ ପ୍ରଣାଳୀରେ ଶିକ୍ଷିତ କରାଇଥିଲେ । ଏହି ସମୟରେ କମ୍ପାନିର କର୍ମ୍ମକର୍ତ୍ତାମାନେ ବିନାଶୁଳ୍କରେ ବାଣିଜ୍ୟ କରୁଥିଲେ । ଏଥିରେ ନାନାପ୍ରକାର ଗୋଳମାଳ ଜନ୍ମିଲା । ମିରକାସିମ ଏ ବିଷୟରେ କଲିକତାର ବଣିକସଭାପାଖରେ ଗୁହାରି କଲେ; କିନ୍ତୁ କେହି ଶୁଣିଲେ ନାହିଁ । ମିରକାସିମ ରାଗାନ୍ୱିତ ହୋଇ ଯୁଦ୍ଧ ଆରମ୍ଭ କଲେ । ଉଦୟନାଲ ଯୁଦ୍ଧରେ ମେଜର ଅଡାମସ୍ ଦ୍ୱାରା ପରାଜିତ ହୋଇ ମିରକାସିମ ଅଯୋଧ୍ୟାର ନବାବଙ୍କର ଆଶ୍ରୟ ନେଲେ । ଏଠାରେ ସେ ଅଯୋଧ୍ୟାର ନବାବ ଓ ମୋଗଲସମ୍ରାଟ୍ ଶାହଆଲମଙ୍କ ସହ ମିଳିତ ହୋଇ ପାଟନା ଆକ୍ରମଣ କଲେ । ୧୭୬୪ ରେ ମେଜର ମନ୍‌ରୋ ଏମାନଙ୍କୁ ବକ୍‌ସାର ଯୁଦ୍ଧରେ ସମ୍ପୂର୍ଣ୍ଣରୂପେ ପରାସ୍ତ କରିବାରୁ କାସିମଙ୍କର ଆଶା ଭରସା ଏକାବେଳକେ ଲୋପ ପାଇଲା । ଅଯୋଧ୍ୟା ଇଂରେଜମାନଙ୍କର ପଦାନତ ହେଲା ।

୧୭୬୫ ରେ କମ୍ପାନିର ଡିରେକ୍ଟରମାନେ କ୍ଲାଇବଙ୍କୁ ଦ୍ୱିତୀୟଥର ଗବର୍ଣ୍ଣର କରି ବଙ୍ଗଳାକୁ ପଠାଇଲେ । ସେ ଯୁଦ୍ଧ ଓ ରାଜ୍ୟ ସମ୍ବନ୍ଧୀୟ ସମସ୍ତ କ୍ଷମତା ନେଇ କଲିକତାରେ ଉପସ୍ଥିତ ହେଲେ ।

କଲିକତାରେ ଉପସ୍ଥିତ ହୋଇ କ୍ଲାଇବ ଏଲାହାବାଦକୁ ଗଲେ । ସେ ଯୁଦ୍ଧର ବ୍ୟୟ ଲାଗି ୫୦ ଲକ୍ଷ ଟଙ୍କା ଗ୍ରହଣ କରି ଅଯୋଧ୍ୟାକୁ

ନବାବ ଉଜୀରଙ୍କୁ ଫେରାଇଦେଲେ । ଏଲାହାବାଦ ଓ କୋରା ପ୍ରଦେଶଦ୍ୱୟ ସମ୍ରାଟ୍ ସାହଆଲମଙ୍କୁ ଛାଡ଼ିଦେଇ ତାଙ୍କଠାରୁ ଉତ୍ତର ସରକାରର ଦଖଲନାମା ଏବଂ ବଙ୍ଗ, ବିହାର ଓ ଓଡ଼ିଶାର ଦେୱାନ ଅର୍ଥାତ୍ ରାଜସ୍ୱ ଅଦାୟର କ୍ଷମତା ନେଲେ । ବଙ୍ଗଳାର ନବାବ ଇଂରେଜ-ମାନଙ୍କଠାରୁ ବାର୍ଷିକ ୬୦ ଲକ୍ଷ ଟଙ୍କା ପେନସନ ପ୍ରାପ୍ତ ହୋଇ ବିଚାର-କାର୍ଯ୍ୟର ଭାର ପ୍ରାପ୍ତ ହେଲେ । ଏହାପରେ କହିବାହାରା ଏକ ରାଜ୍ୟରେ ଦୁଇପ୍ରକାର ଶାସନ ଚଳିଲା—କମ୍ପାନି ହେଲେ ଦେୱାନ ଓ ନବାବ ହେଲେ ନାଜିମ୍ ବା ମାଜିଷ୍ଟ୍ରେଟ ।

ତାହାପରେ କ୍ଲାଇବ କମ୍ପାନିର କର୍ମଚାରୀମାନଙ୍କର ବେତନ ବଢ଼ାଇ-ଦେଇ ସେମାନଙ୍କ ଗୁପ୍ତ ବାଣିଜ୍ୟ ବନ୍ଦ କଲେ । କର୍ମଚାରୀମାନେ ଆପତ୍ତି କଲେହେଁ କିଛି ଫଳ ହେଲା ନାହିଁ ।

କ୍ଲାଇବ ୧୭୬୭ ରେ ଭାରତ ତ୍ୟାଗ କଲେ । ୧୭୬୭ ରୁ ୧୭୭୨ ପର୍ଯ୍ୟନ୍ତ ବଙ୍ଗଳାରେ କିଛି ବିଶେଷ ଘଟଣା ଘଟି ନ ଥିଲା । ୧୭୭୦ ରେ ବଙ୍ଗଳାରେ ଗୋଟିଏ ଭୟାନକ ଦୁର୍ଭିକ୍ଷ ହୋଇଥିଲା । ଏଥିରେ ବଙ୍ଗଳାର ପ୍ରାୟ ଏକତୃତୀୟାଂଶ ଲୋକ ମୃତ୍ୟୁମୁଖରେ ପତିତ ହୋଇଥିଲେ । କ୍ଲାଇବ-ପ୍ରବର୍ତ୍ତିତ ଦ୍ୱିଶାସନ-ପ୍ରଣାଳୀ (ଅର୍ଥାତ୍ ଇଂରେଜମାନେ ଖଜଣା ଅଦାୟ କରିବେ ଏବଂ ନବାବ ବିଚାରକାର୍ଯ୍ୟ କରିବେ) ସୁବିଧାଜନକ ହୋଇ ନ ଥିଲା । ନାନାପ୍ରକାର ବିଶୃଙ୍ଖଳା ଉପସ୍ଥିତ ହେଲା । ଅବ-ଶେଷରେ କମ୍ପାନିର ଡିରେକ୍ଟରମାନେ ୱାରେନ ହେଷ୍ଟିଙ୍ଗ୍‌ସଙ୍କୁ ବଙ୍ଗଳାର ଗବର୍ଣ୍ଣରପଦରେ ନିଯୁକ୍ତ କରି ଅମୂଳ ଶାସନସଂସ୍କାରର କ୍ଷମତା ଦେଲେ ।

---

## ଗବର୍ଣ୍ଣର ଜେନେରାଲଗଣ ।

## ୱାରେନ୍ ହେଷ୍ଟିଂସ୍—ରାଜସ୍ୱ ଓ ବିଚାରବିଭାଗର ସଂସ୍କାର—ରେଗୁଲେଟିଙ୍ଗ୍ ଆକ୍ଟ୍ ।

ୱାରେନ୍ ହେଷ୍ଟିଂସ୍ ଗବର୍ଣ୍ଣର ହୋଇ ପ୍ରଥମେ ଖଜଣା କିପରି ଉତ୍ତମରୂପେ ଆଦାୟ ହେବ ସେ ବିଷୟରେ ଚେଷ୍ଟା କଲେ । ଏଥିପୂର୍ବେ ଦେଶୀୟ କର୍ମ୍ମଚାରୀମାନେ ଖଜଣା ଆଦାୟ କରୁଥିଲେ । ସେମାନେ ତାହା ଆଦାୟ କରିବା ସକାଶେ ପ୍ରଜାମାନଙ୍କୁ ଅତ୍ୟନ୍ତ କଷ୍ଟ ଦେଉଥିଲେ; ଆଉ ମଧ୍ୟ ସୁଚାରୁରୂପେ ଖଜଣା ଆଦାୟ କରି ପାରୁନଥିଲେ । ୱାରେନ୍‌ହେଷ୍ଟିଂସ୍ ବଙ୍ଗଳାକୁ ୧୪ ଓ ବିହାରକୁ ୪ ଜିଲ୍ଲାରେ ବିଭକ୍ତ କରି ପ୍ରତ୍ୟେକ ଜିଲ୍ଲାରେ ଖଜଣା ଆଦାୟ ସକାଶେ ଇଉରୋପୀୟ କଲେକ୍ଟର ରଖିଲେ । ସେ ପାଟନା ଓ ମୁର୍ଶିଦାବାଦରୁ ପ୍ରଧାନ ରାଜସ୍ୱକାର୍ଯ୍ୟାଳୟମାନ କଲିକତାକୁ ଉଠାଇ ଆଣିଥିଲେ ଏବଂ ତାହାକୁ ପ୍ରଧାନ ପ୍ରଧାନ ଇଂରେଜ କର୍ମ୍ମଚାରୀମାନଙ୍କ ଦ୍ୱାରା ଗଠିତ ଏକ ରାଜସ୍ୱସମିତିର ଅଧୀନରେ ରଖିଥିଲେ । ଜମିଦାରମାନଙ୍କ ସହିତ ନୂଆ ବନ୍ଦୋବସ୍ତ କରାହୋଇଥିଲା । ଯେଉଁ ଜମିଦାରମାନେ ନ୍ୟାୟସଙ୍ଗତ କର ଦେବାକୁ ସ୍ୱୀକାର କଲେ ସେମାନେ ନିଜ



ୱାରେନ୍ ହେଷ୍ଟିଂସ୍ ।

ନିଜ ଜମିଦାରୀ ଦଖଲରେ ରଖିଲେ । ଯେଉଁମାନେ ଏପରି ଦେବାକୁ ଅସ୍ୱୀକାର କଲେ ସେମାନଙ୍କୁ କିଛି କିଛି ବାର୍ଷିକ ଭତ୍ତା ଦିଆଯାଇ ସେମାନଙ୍କର ଜମିଦାରୀ ଅନ୍ୟ ଲୋକମାନଙ୍କୁ ଦିଆଗଲା ।

ପ୍ରତ୍ୟେକ ଜିଲ୍ଲାରେ କଲେକ୍ଟରଙ୍କ ଅଧୀନରେ ଗୋଟିଏ ଦେୱାନି ଅଦାଲତ ଓ ଗୋଟିଏ ଫୌଜଦାରି ଅଦାଲତ ସ୍ଥାପିତ ହେଲା । ଦେୱାନ-ମାନେ ରାଜସ୍ୱସମ୍ବନ୍ଧୀୟ ବିଚାରଭାର ଆଉ କାଜିମାନେ ଫୌଜଦାରି ଅଦାଲତର ବିଚାରଭାର ପ୍ରାପ୍ତ ହେଲେ । ଅପିଲ ଶୁଣିବାଲାଗି କଲିକତାରେ ସଦର ଦେୱାନି ଓ ସଦର ନିଜାମତ ନାମକ ଦୁଇଗୋଟି ପ୍ରଧାନ ବିଚାରାଳୟ ସ୍ଥାପିତ ହେଲା ।

ରାଜସ୍ୱ-ସଂସ୍କାର—ହେଷ୍ଟିଂସ୍ କମ୍ପାନିଙ୍କର ରାଜକୋଷ ପୂର୍ଣ୍ଣ କରିବା ସକାଶେ ବଙ୍ଗନବାବଙ୍କର ଅର୍ଦ୍ଧେ ବୃତ୍ତି କାଟିଦେଲେ । ଏଥିରେ ବାର୍ଷିକ ୧୬ ଲକ୍ଷ ଟଙ୍କା ଲାଭ ହେଲା । କ୍ଲାଇବ ସାହ ଆଲମଙ୍କୁ ବଙ୍ଗ, ବିହାର ଓ ଓଡ଼ିଶାର ଦେୱାନି ସକାଶେ ବାର୍ଷିକ ୨୬ ଲକ୍ଷ ଟଙ୍କା ଦେଉଥିଲେ । ସାହଆଲମ୍ ଦିଲ୍ଲୀସିଂହାସନ ପାଇବା ଆଶାରେ ମରହଟ୍ଟାମାନଙ୍କର ଶରଣାଗତ ହେଲେ । ଏଣୁ ହେଷ୍ଟିଂସ୍ ତାଙ୍କ ବୃତ୍ତି ରହିତ କରିଦେଲେ । କ୍ଲାଇବ ସାହ ଆଲମଙ୍କୁ ଏଲାହାବାଦ ଓ କୋରା ପ୍ରଦେଶଦ୍ୱୟ ଦେଇ-ଥିଲେ । ସାହ ଆଲମ୍ ମରହଟ୍ଟାମାନଙ୍କର ଶରଣାଗତ ହେବାରୁ ଏଲାହାବାଦ ଓ କୋରା ମରହଟ୍ଟାମାନଙ୍କର ହସ୍ତଗତ ହେଲା । ତେଣୁ ହେଷ୍ଟିଂସ୍ ଏହା ନ୍ୟାୟସଙ୍ଗତ ନୁହେଁ ବୋଲି ଘୋଷଣା କରି ଉପଯୁକ୍ତ ମୂଲ୍ୟ ନେଇ ଉପରୋକ୍ତ ଦୁଇ ପ୍ରଦେଶ ଅଯୋଧ୍ୟାନବାବଙ୍କୁ ବିକ୍ରୟ କରିଦେଲେ । ୧୭୭୪ରେ ଅଯୋଧ୍ୟାନବାବଙ୍କୁ ରୋହିଲଖାଣ୍ଡ ବିରୁଦ୍ଧରେ ସାହାଯ୍ୟ ଦେବାରୁ ଇଂରେଜମାନେ ଅନେକ ଟଙ୍କା ପ୍ରାପ୍ତ ହୋଇଥିଲେ ।

ରେଗୁଲେଟିଙ୍ଗ୍ ଥକ୍ଟ—ଇତିମଧ୍ୟରେ ଶାସନସମ୍ବନ୍ଧୀୟ ନାନାବିଶୃଙ୍ଖଳ ପାର୍ଲିମେଣ୍ଟ ମହାସଭା ଶୁଣିପାରିଥିଲେ । ତନ୍ନିମିତ୍ତ କେଉଁ ମନ୍ତ୍ରୀ ଲର୍ଡ ନର୍ଥ ୧୭୭୩ରୁ ଭବିଷ୍ୟତରୁ କମ୍ପାନି କିପରି କାର୍ଯ୍ୟ କରିବେ ସେ ସମ୍ବନ୍ଧରେ ଗୋଟିଏ ଆଇନ ପ୍ରଣୟନ କରିଥିଲେ । ଏହାକୁ ରେଗୁଲେଟିଙ୍ଗ୍ ଥକ୍ଟ କହନ୍ତି । ତାହାର ପ୍ରଧାନ ନିୟମମାନ ଏହି :—

୧ । ବଙ୍ଗର ଗବର୍ଣ୍ଣର ଭାରତବର୍ଷରେ ଗବର୍ଣ୍ଣର ଜେନେରେଲ ହେବେ । ଆଉ ମାନ୍ଦ୍ରାଜ ଓ ବମ୍ବେର ପ୍ରେସିଡେନ୍ସି ଏହାଙ୍କ ଅଧୀନରେ ରହିବ ।

୨ । ଗବର୍ଣ୍ଣର ଜେନେରେଲଙ୍କ ସଭାରେ ଚାରିଜଣ ମନ୍ତ୍ରୀ ରହିବେ ।

୩ । କଲିକତାରେ ସୁପ୍ରୀମ କୋର୍ଟ ନାମକ ଏକ ବିଚାରାଳୟ ସ୍ଥାପିତ ହେବ । ସେଥିରେ ଜଣେ ପ୍ରଧାନ ବିଚାରପତି ଓ ତିନିଜଣ ଅପ୍ରଧାନ ଜଜ ରହିବେ । ଏମାନେ କମ୍ପାନିର କର୍ମଚାରୀମାନଙ୍କର ବିଚାର କରିବେ ।

ଏହି ଆଇନ ଅନୁସାରେ ୱାରେନ୍ ହେଷ୍ଟିଙ୍ଗସ୍ ଭାରତର ପ୍ରଥମ ଗବର୍ଣ୍ଣର ଜେନେରାଲ ହେଲେ । କର୍ଣ୍ଣେଲ ମନ୍‌ସନ୍, ଜେନେରାଲ କ୍ଲେଭରିଙ୍ଗ, ସର୍ ଫିଲିପ ଫ୍ରାନ୍‌ସିସ୍ ଆଉ ରିଚାର୍ଡ ୱାରୱେଲ ଗବର୍ଣ୍ଣର ଜେନେରାଲଙ୍କ ସଭାର ମନ୍ତ୍ରୀ ହେଲେ । ସର୍ ଇଲାଇଜା ଇମ୍ପେ ସୁପ୍ରୀମ-କୋର୍ଟର ପ୍ରଧାନ ବିଚାରପତି ହେଲେ । ୧୭୭୪ ରେ ଏହି ଆଇନ ଅନୁସାରେ କାର୍ଯ୍ୟ ଆରମ୍ଭ ହେଲା ।

ବର୍ତ୍ତମାନ ଶାସନରେ ଆଉ ଗୋଟିଏ ଗୋଳମାଳ ଉପସ୍ଥିତ ହେଲା । ବଡ଼ କିଏ? ଗବର୍ଣ୍ଣର ଜେନେରାଲ ଓ ମନ୍ତ୍ରୀମାନେ, ନା ସୁପ୍ରୀମକୋର୍ଟ? ୱାରେନ୍‌ହେଷ୍ଟିଙ୍ଗସ୍ କୌଣସି କାର୍ଯ୍ୟ କରିବାକୁ ଗଲେ ମନ୍ତ୍ରୀମାନେ ଏକମତ ହୋଇ ବାଧା ଦେବାକୁ ଲାଗିଲେ ଏବଂ ସୁପ୍ରୀମକୋର୍ଟ କମ୍ପାନିର କର୍ମ-

ସୃତ୍ତ୍ରୀମାନଙ୍କ ଦୋଷ ବଚାର କରବାର କ୍ଷମତା ପାଇଥିବାରୁ ଗବର୍ଣ୍ଣର ଜେନେରାଲ ଏବଂ ତାଙ୍କ ସଭାର ସମାଲୋଚନା କରବାକୁ ଲାଗିଲେ। ଗବର୍ଣ୍ଣର ଜେନେରାଲଙ୍କ ସଭାରେ ମଧ୍ୟ ଦୁଇଦଳ ଗଠିତ ହୋଇଥିଲା। ପ୍ରଥମ ଦଳରେ ୱାରେନ୍‌ହେଷ୍ଟିଙ୍ଗ୍‌ସ୍ ଓ ବାରୱେଲ୍, ଦ୍ୱିତୀୟ ଦଳରେ ଫ୍ରାନ୍‌ସିସ୍, କ୍ଳେଭରଙ୍ଗ୍ ଓ ମନ୍‌ସନ୍। ଫ୍ରାନ୍‌ସିସ୍ ହେଷ୍ଟିଙ୍ଗ୍‌ସଙ୍କର ପରମ ଶତ୍ରୁ ଥିବାରୁ ହେଷ୍ଟିଙ୍ଗ୍‌ସଙ୍କର ସମସ୍ତ କାର୍ଯ୍ୟରେ ବାଧା ଦେଉଥିଲେ।

ମନ୍ତ୍ରିସଭାର ଅଯୋଧ୍ୟାନବାବଙ୍କ ସହିତ ନୂତନ ବନ୍ଦୋବସ୍ତ :— ୧୭୭୫ ରେ ଅଯୋଧ୍ୟାନବାବଙ୍କର ମୃତ୍ୟୁ ହେଲା। ମନ୍ତ୍ରିସଭାରେ ଫ୍ରାନ୍‌ସିସ୍‌ଙ୍କ ଦଳ ନୂତନ ନବାବଙ୍କ ସଙ୍ଗେ ନୂତନ ବନ୍ଦୋବସ୍ତ କରି ବନାରସପ୍ରଦେଶ ନେବାକୁ ବସିଲେ। ହେଷ୍ଟିଙ୍ଗ୍‌ସ୍ ଏଥିରେ ବାଧା ଦେଲେ, କିନ୍ତୁ ଅକୃତକାର୍ଯ୍ୟ ହେଲେ। ମୃତ ନବାବ ଅନେକ ଧନ ସମ୍ପତ୍ତି ରଖିଯାଇଥିଲେ। ହେଷ୍ଟିଙ୍ଗ୍‌ସଙ୍କ ଅମତରେ ମନ୍ତ୍ରିସଭା ନବାବଙ୍କ ମାତା ଓ ପତ୍ନୀମାନଙ୍କର ଉକ୍ତ ସମ୍ପତ୍ତି ପ୍ରତି ଦାବୀ ସ୍ୱୀକାର କଲେ। ଏଣେ ନୂତନ ନବାବ କମ୍ପାନୀଙ୍କ ଋଣ ପରିଶୋଧ କରି ପାରିଲେ ନାହିଁ।

ନନ୍ଦକୁମାରଙ୍କ ଫାଶି—ହେଷ୍ଟିଙ୍ଗ୍‌ସଙ୍କର ଅନେକ ଶତ୍ରୁ ଥିଲେ। ମନ୍ତ୍ରିସଭାରେ ଏପରି ଦୁଇ ଦଳ ହେବା ଦେଖି ହେଷ୍ଟିଙ୍ଗ୍‌ସଙ୍କ ବିରୁଦ୍ଧେ ଅନେକ ଲୋକ ଅଭିଯୋଗ କଲେ। ମହାରାଜ ନନ୍ଦକୁମାର ହେଷ୍ଟିଙ୍ଗ୍‌ସଙ୍କ ବିରୁଦ୍ଧେ ଉତ୍କୋଚଗ୍ରହଣର ଅଭିଯୋଗ ଆଣିଥିଲେ। ସେ ତାହା ସପ୍ରମାଣ କରିବାର ଉଦ୍ୟୋଗ କରବାରୁ ହେଷ୍ଟିଙ୍ଗ୍‌ସ ତାହାଙ୍କ ନାମରେ ସୁପ୍ରୀମ୍ କୋର୍ଟରେ ଅଭିଯୋଗ କରିଲେ ଯେ ସେ ଗୋଟିଏ ଦଲିଲ ଜାଲ୍ କରିଅଛନ୍ତି। ଏହି ଅପରାଧ ପ୍ରମାଣିତ ହେବାରୁ ନନ୍ଦକୁମାରଙ୍କର ପ୍ରାଣଦଣ୍ଡ ହେଲା। ଏହାର ଫଳ ଏହି ହେଲା ଯେ ଆଉ କେହି ହେଷ୍ଟିଙ୍ଗ୍‌ସଙ୍କ ବିରୁଦ୍ଧେ ଅଭିଯୋଗ କରବାକୁ ସାହସୀ ହେଲେ ନାହିଁ।

୧୭୭୨ରେ ମାଧବରାଓଙ୍କ ମୃତ୍ୟୁ ହେବାରୁ ମନ୍ତ୍ରିସଭାରେ ହେଷ୍ଟିଙ୍ଗସ୍‌ଙ୍କ କ୍ଷମତା ବଢ଼ିଗଲା ।

ପ୍ରଥମ ମରହଟ୍ଟାଯୁଦ୍ଧ—ଚତୁର୍ଥ ପେଶବା ମାଧବରାଓ ୧୭୭୨ ରେ ମରିଯିବାରୁ ତାହାଙ୍କର ଭ୍ରାତା ନାରାୟଣ ରାଓ ପେଶବା ହେଲେ । ନାରା-ୟଣ ଅଳ୍ପଦିନ ପରେ ହତ ହେବାରୁ ତାହାଙ୍କ ଖୁଡୁତା ରଘୋବା ପେଶବା ପଦ ନେଲେ । କିନ୍ତୁ ମୃତ ନାରାୟଣ ରାଓଙ୍କ ଅନ୍ତଃସତ୍ତ୍ୱା ପତ୍ନୀ ଗୋଟିଏ ପୁତ୍ର ପ୍ରସବ କଲେ । ନ ନାଫର୍ଣ୍ଣାବିସ୍ ଆଉ ଅନ୍ୟାନ୍ୟ ମରହଟ୍ଟାସର୍ଦ୍ଦାର-ମାନେ ଉକ୍ତ ଶିଶୁଙ୍କୁ ପେଶବା କରି ତାହାଙ୍କ ପକ୍ଷ ଗ୍ରହଣ କଲେ । ରଘୋବା ବମ୍ବାଇରେ ଇଂରେଜମାନଙ୍କର ଆଶ୍ରୟ ନେଲେ । ସୁରଟରେ ଏକ ସନ୍ଧି ହେଲା । ରଘୋବା ବମ୍ବେ ନିକଟସ୍ଥ ସାଲସେଟ ଓ ବେସିନ ନାମକ ଦୁଇଗୋଟି ଦ୍ୱୀପ ଇଂରେଜମାନଙ୍କୁ ଦେବାକୁ ସ୍ୱୀକାର କଲେ । ଏହି ସନ୍ଧିରେ ହେଷ୍ଟିଙ୍ଗସ୍‌ଙ୍କର ସମ୍ମତି ନ ଥିଲା । କିନ୍ତୁ ଯୁଦ୍ଧ ହେବାରୁ ସେ ବାଧ୍ୟ ହୋଇ ବଙ୍ଗଳାରୁ ସୈନ୍ୟ ପଠାଇଲେ । ଏହି ଯୁଦ୍ଧ ୧୭୮୨ ରେ ଶେଷ ହେଲା । ସାଲବାଇ ନାମକ ସ୍ଥାନରେ ସନ୍ଧି ହେଲା । ଇଂରେଜ-ମାନେ ଯେତେ ସ୍ଥାନ ଅଧିକାର କରିଥିଲେ ତାହାକୁ ସେମାନେ ମରହଟ୍ଟମାନଙ୍କୁ ଫେରାଇଦେଲେ, କେବଳ ସାଲସେଟ, ଏଲଫାଣ୍ଟା ଓ ଆଉ କେତେଗୋଟି ସାନ ଦ୍ୱୀପ ନିଜ ଦଖଲରେ ରଖିଲେ । ନାରାୟଣ-ରାଓଙ୍କ ପୁତ୍ର ମାଧବରାଓ ନାରାୟଣ ପେଶବା ହେଲେ । ରଘୋବା ପେନ୍‌ସନ୍ ପାଇଲେ ।

—ପ୍ରଥମ ମହୀସୁରଯୁଦ୍ଧ, ୧୭୮୦–୧୭୮୪ :—ହାଇଦରଙ୍କ ସନ୍ଧି ଅନୁ-ସାରେ ଇଂରେଜମାନେ ତାଙ୍କୁ ଯୁଦ୍ଧ ସମୟରେ ସାହାଯ୍ୟ ଦେବାକୁ ସ୍ୱୀକାର କରିଥିଲେ । କିନ୍ତୁ ମରହଟ୍ଟାମାନେ ଯେତେବେଳେ ମହୀସୁର ଆକ୍ରମଣ କଲେ ତେତେବେଳେ ଇଂରେଜମାନେ ତାଙ୍କୁ ସାହାଯ୍ୟ ଦେଲେ ନାହିଁ । ଇଂରେଜମାନଙ୍କୁ ମରହଟ୍ଟାଯୁଦ୍ଧରେ ବ୍ୟାପୃତ ଥିବାର


ହାଇଦର ଅଲ୍ଲୀ ।

ଦେଖି ହାଇଦର ଅନେକ ସୈନ୍ୟ ସେନ ମାନ୍ଦ୍ରାଜ ଆକ୍ରମଣ କଲେ । ସେ କ୍ରମଶଃ ଇଂରେଜମାନଙ୍କର ଅନେକ ଦୁର୍ଗ ଦଖଲ କରି କର୍ଣ୍ଣେଲ ବେଲିଙ୍କ ଅଧୀନସ୍ଥ ଇଂରେଜ ସୈନ୍ୟଙ୍କୁ ପରାଜୟ ଓ ବେଲିଙ୍କୁ ବନ୍ଦୀ କଲେ । ହେଷ୍ଟିଙ୍ଗ୍ସ ଏହା ଶୁଣି ସାର୍ ଅମ୍ବାର କୁଟ୍‌ଙ୍କୁ ପଠାଇଥିଲେ । କୁଟ୍ ପଲେଥର ହାଇଦରଙ୍କୁ ପରାସ୍ତ କରିଥିଲେ । ୧୭୮୨ ରେ ହାଇଦରଙ୍କ ମୃତ୍ୟୁ ହେବାରୁ ତାଙ୍କ ପୁତ୍ର ଟିପୁ ଯୁଦ୍ଧ ଚଳାଇଥିଲେ । ୧୭୮୪ରେ ସନ୍ଧି ହେବାରୁ ଯୁଦ୍ଧପୂର୍ବରେ ଯାହାର ଯେଉଁ ଅଧିକାର ଥିଲା ତାହା ହିଁ ରହିଲା ।

ଚୈତସିଂହ—ହେଷ୍ଟିଙ୍ଗ୍ସ ଏହିପରି ଯୁଦ୍ଧରେ ପ୍ରବୃତ୍ତ ହେବାରୁ କମ୍ପାନୀର ଅନେକ ଟଙ୍କା ଖର୍ଚ୍ଚ ହେଲା । ବନାରସର ରାଜା ଚୈତସିଂହ ଇଂରେଜଅଧୀନରେ ରହି ଅତ୍ୟନ୍ତ ଧନବାନ୍ ହୋଇଥିଲେ । ହେଷ୍ଟିଙ୍ଗ୍ସ ଯୁଦ୍ଧବ୍ୟୟ ସକାଶେ ଚୈତସିଂହଙ୍କୁ ବେଶି କର ଦେବାକୁ କହିଲେ । କିନ୍ତୁ ସେ ନ ଦେବାରୁ ହେଷ୍ଟିଙ୍ଗ୍ସ ତାଙ୍କୁ ବନ୍ଦୀ କଲେ । ସେ କୌଣସି ପ୍ରକାରେ ମୁକ୍ତି ଲଭି ବିଦ୍ରୋହୀ ହେଲେ ; କିନ୍ତୁ ପରାଜିତ ହୋଇ ପଳାୟନ କଲେ । ଇଂରେଜମାନେ ତାହାଙ୍କ ବଂଶୀୟ ଆଉ ଜଣକୁ ବାରଣସୀର ରାଜା କଲେ ।

ଅଯୋଧ୍ୟାର ବେଗମ୍—ଅଯୋଧ୍ୟାନବାବ ଇଂରେଜମାନଙ୍କଠାରୁ ଅନେକ ଟଙ୍କା ଧାରିଥିଲେ । ତାଙ୍କ ପିତାଙ୍କ ମୃତ୍ୟୁପରେ ମୃତ ନବାବଙ୍କ ମାତା ଓ ପତ୍ନୀ ସମସ୍ତ ସମ୍ପତ୍ତି ନେଇଯାଇଥିଲେ । ବର୍ତ୍ତମାନ ହେଷ୍ଟିଙ୍ଗସ୍ ଟଙ୍କା ମାଗିବାରୁ ନୂତନ ନବାବ ତାହା ଦେବାକୁ ନିଜ ଅସାମର୍ଥ୍ୟ ପ୍ରକାଶ କଲେ । ତହୁଁ ବେଗମ୍‌ମାନେ ଚେଟସିଂହଙ୍କୁ ସାହାଯ୍ୟ କରିଥିବାର ଅଭିଯୋଗ କରି ହେଷ୍ଟିଙ୍ଗସ୍ ସେମାନଙ୍କଠାରୁ ୭୫ ଲକ୍ଷ ଟଙ୍କା ଅଦାୟ କରିଥିଲେ ।

ପିଟ୍‌ସାହେବଙ୍କର ଭାରତସମ୍ବନ୍ଧୀୟ ଆଇନର—ହେଷ୍ଟିଙ୍ଗସଙ୍କ ଶାସନକାଳର ଶେଷଭାଗରେ ଭାରତଶାସନ ପ୍ରତି ବିଲାତର ଲୋକମାନଙ୍କ ଦୃଷ୍ଟି ଅଧିକତର ଆକୃଷ୍ଟ ହୋଇଥିଲା । ବିଲାତର ଲୋକେ ଇଚ୍ଛା କଲେ ଯେ, ଏଣିକି ଭାରତର ଶାସନକର୍ତ୍ତା ତାଙ୍କର କାର୍ଯ୍ୟପାଇଁ କେବଳ କମ୍ପାନୀଙ୍କ ପାଖରେ ଦାୟୀ ନ ରହି ବିଲାତ ଗବର୍ଣ୍ଣମେଣ୍ଟ ପାଖରେ ମଧ୍ୟ ଦାୟୀ ହେବେ । ତେଣୁ ୧୭୮୩ ରେ ଫକ୍ସ୍‌ସାହେବ ଏକ ଆଇନର ପାଣ୍ଡୁଲିପି ପ୍ରସ୍ତୁତ କରି ପାର୍ଲିମେଣ୍ଟର କମନସ୍ ସଭାରେ ଆଗତ କଲେ । ମାତ୍ର ଲର୍ଡ୍‌ମାନେ ଏଥିରେ ସମ୍ମତି ପ୍ରଦାନ କଲେ ନାହିଁ ।

୧୭୮୪ ଖ୍ରୀ: ଅ: ରେ ପ୍ରଧାନ ରାଜମନ୍ତ୍ରୀ ପିଟ୍‌ସାହେବ ଭାରତର ଶାସନସଂସ୍କାର ନିମନ୍ତେ ଏକ ଆଇନର ପାଣ୍ଡୁଲିପି ପ୍ରସ୍ତୁତ କରି ପାର୍ଲିମେଣ୍ଟରେ ଉପସ୍ଥାପିତ କଲେ । ଏହାକୁ ପାର୍ଲିମେଣ୍ଟ ମଞ୍ଜୁର କରିବାରୁ ଭାରତ ଶାସନ କରିବାପାଇଁ ବିଲାତର ମନ୍ତ୍ରିସମାଜର କେତେକ ସଭ୍ୟଙ୍କୁ ନେଇ ଗୋଟିଏ ସଭା ଗଠିତ ହେଲା । ଏହି ସଭାର ସଭାପତି ଭାରତସଚିବର ସେକ୍ରେଟେରୀରୂପ କାର୍ଯ୍ୟ କଲେ । ଭାରତଶାସନର ଭାର ନାମମାତ୍ର କମ୍ପାନୀଙ୍କ ହସ୍ତରେ ରହିଲେହେଁ ପ୍ରକୃତରେ ଏହି ସଭାଉପରେ ତାହା ନ୍ୟସ୍ତ ହୋଇଥିଲା । ଏହିରୂପେ ଭାରତଶାସନ ବ୍ରିଟିଶ୍ ଗବର୍ଣ୍ଣମେଣ୍ଟର ଏକ ଅଙ୍ଗ ହୋଇଥିଲା ।

କଲିକତା ମାଦ୍ରାସା-ସ୍ଥାପନ—ଏହି ବିଦ୍ୟାଳୟ ୱାରେନ୍ ହେଷ୍ଟିଂସ୍‌ଙ୍କର ଗୋଟିଏ ପ୍ରଧାନ କୀର୍ତ୍ତି । ୧୭୮୧ ଅବ୍ଦରେ ହେଷ୍ଟିଂସ୍ ଦେଖିଲେ ଯେ ସେ ସମୟର ବିଚାରାଳୟମାନଙ୍କରେ ପ୍ରଚଳିତ ମୁସଲମାନୀ ଆଇନ ଉତ୍ତମରୂପେ ଜାଣିଥିବା ଲୋକ ଅଧିକ ନାହାନ୍ତି । ତେଣୁ ସେ ଆରବୀ ଭାଷା, ସାହିତ୍ୟ ଏବଂ ଆଇନ ଶିକ୍ଷାଦେବା ଉଦ୍ଦେଶ୍ୟରେ ଏହି ବିଦ୍ୟାଳୟ ସ୍ଥାପନ କରିଥିଲେ । ଏହାର ବ୍ୟୟନିର୍ବାହାର୍ଥେ ପ୍ରଥମେ ଖଣ୍ଡିଏ ଜମିଦାରୀ ଛଡ଼ାଯାଇଥିଲା । ୧୮୧୯ ଅବ୍ଦରେ ଗବର୍ଣ୍ଣମେଣ୍ଟ ଏହି ଜମିଦାରୀଖଣ୍ଡିକ ନେଇ ବାର୍ଷିକ ଟ ୩୦୦୦୦ ସରକାରୀ ତହବିଲରୁ ଦେବାର ବନ୍ଦୋବସ୍ତ କରିଥିଲେ । ଅଧୁନା ଏହି ବିଦ୍ୟାଳୟରେ ଆରବୀ ଓ ପାର୍ସୀ ଭାଷାର ସାହିତ୍ୟ, ଅଳଙ୍କାର ଓ ମୁସଲମାନୀ ଆଇନ ଶିକ୍ଷା ଦିଆଯାଏ ।

ଏସିଆଟିକ୍ ସୋସାଇଟୀର ସ୍ଥାପନ :—୧୭୮୪ ଖ୍ରୀ: ଅ: ରେ ସୁପ୍ରୀମ କୋର୍ଟର ତତ୍କାଳୀନ ଜଜ୍ ସର୍ ୱିଲିୟମ୍ ଜୋନସ୍ ଏସିଆଟିକ୍ ସୋସାଇଟୀ ନାମକ ଗୋଟିଏ ସମାଜ କଲିକତାରେ ସ୍ଥାପନ କରିଥିଲେ । ହେଷ୍ଟିଂସ୍‌ଙ୍କର ଏହି ସମାଜସ୍ଥାପନ ପ୍ରତି ବିଶେଷ ଯତ୍ନ ଏବଂ ସହାନୁଭୂତି ଥିଲା । ଏହି ସମାଜ ଅଦ୍ୟାପି ବିଦ୍ୟମାନ ଅଛି । ଭାରତୀୟ ପୁରାତନ ଗ୍ରନ୍ଥମାନଙ୍କର ପୁନରୁଦ୍ଧାର ଏହାର ପ୍ରଧାନ କାର୍ଯ୍ୟ । ପୂର୍ବକାଳୀନ ସଭ୍ୟତା, ଶିଳ୍ପ, ଗୀତ ପ୍ରତି ସର୍ବସାଧାରଣର ଦୃଷ୍ଟି ଆକର୍ଷଣ କରିବା, ବିଶେଷତଃ ପାଶ୍ଚାତ୍ୟଦେଶୀୟ ପଣ୍ଡିତମାନଙ୍କର ଏ ଦେଶୀୟ ସାହିତ୍ୟ ପ୍ରତି ଅନୁରାଗ ଜାତ କରାଇବା ଏହାର ପ୍ରଧାନ ଲକ୍ଷ୍ୟ ।

ହେଷ୍ଟିଂସ୍‌ଙ୍କର ବିଲାତପ୍ରତ୍ୟାବର୍ତ୍ତନ ଏବଂ ସେଠାରେ ତାହାଙ୍କ ପ୍ରତି ଅଭିଯୋଗ—୧୭୮୫ ଖ୍ରୀ: ଅ: ରେ ହେଷ୍ଟିଂସ ବିଲାତକୁ ଫେରିଗଲେ । ସର୍ ଫିଲିପ୍ ଫ୍ରାନସିସ ଭାରତରେ ଥିଲାବେଳେ ହେଷ୍ଟିଂସ୍‌ଙ୍କର ଶତ୍ରୁ ହୋଇଥିଲେ । ବିଲାତରେ ସୁଦ୍ଧା ତାହାଙ୍କର ଏହି ଶତ୍ରୁତା ତିରୋହିତ ହୋଇ ନ ଥିଲା । ପାର୍ଲିମେଣ୍ଟ ସଭାରେ ବର୍କପ୍ରମୁଖ ଅନେକ ବ୍ୟକ୍ତି ତାହାଙ୍କ

ବିରୁଦ୍ଧେ ଅନେକ ଅଭିଯୋଗ ଆଣିଥିଲେ । ଭାରତ ଶାସନ କଲାବେଳେ ହେଷ୍ଟିଂସ୍ ଯେଉଁସବୁ ଅତ୍ୟାଚାର କରିଥିଲେ ତାହାହିଁ ଏହି ଅଭିଯୋଗର ବିଷୟ ଥିଲା । ୭ ବର୍ଷ ବିଚାରପରେ ହେଷ୍ଟିଂସ୍ ନିର୍ଦ୍ଦୋଷ ବୋଲି ସାବ୍ୟସ୍ତ ହେଲେ । ମାତ୍ର ମକଦ୍ଦମା ଚଳାଇବାରେ ସେ ସର୍ବସ୍ୱାନ୍ତ ହୋଇଥିଲେ । ତହୁଁ କମ୍ପାନି ଦୟା କରି ତାହାଙ୍କୁ କିଛି କିଛି ଅର୍ଥ ସାହାଯ୍ୟ ଦେଉଥିଲେ । ଅତି ଦରିଦ୍ରାବସ୍ଥାରେ ତାହାଙ୍କର ମୃତ୍ୟୁ ଘଟିଥିଲା ।

---

## ଲର୍ଡ଼ କର୍ଣ୍ଣୱାଲିସ୍‌ଙ୍କର ଶାସନ ସଂସ୍କାର—ଚିରସ୍ଥାୟୀ ବନ୍ଦୋବସ୍ତ ଏବଂ ସରଜନ୍ ଶୋର ।

୧୭୮୬ ରେ ଲର୍ଡ଼ କର୍ଣ୍ଣୱାଲିସ୍ ଗବର୍ଣ୍ଣର ଜେନେରାଲ ହୋଇ ଭାରତକୁ ଆସିଥିଲେ । ହେଷ୍ଟିଂସ୍‌ଙ୍କ ଭାରତତ୍ୟାଗ କରିବା ସମୟରୁ କର୍ଣ୍ଣୱାଲିସଙ୍କ ଭାରତ ଆଗମନ ପର୍ଯ୍ୟନ୍ତ କମ୍ପାନିଙ୍କର ଜଣେ କର୍ମଚାରୀ ସରଜନ୍ ମାକ୍‌ଫରସନ୍ ୨୦ ମାସ ପର୍ଯ୍ୟନ୍ତ ଏକ୍ଟିଂ ଗବର୍ଣ୍ଣର ଜେନେରାଲ ହୋଇଥିଲେ । ଶାସନସଂସ୍କାର, ବଙ୍ଗର ଚିରସ୍ଥାୟୀ ବନ୍ଦୋବସ୍ତ ଏବଂ ଦ୍ୱିତୀୟ ମହୀସୁରଯୁଦ୍ଧ କର୍ଣ୍ଣୱାଲିସଙ୍କ ଅମଳର ପ୍ରଧାନ ଘଟଣା ।



କର୍ଣ୍ଣୱାଲିସ୍ ।

ଶାସନ ସଂସ୍କାର—କର୍ଣ୍ଣୱାଲିସ କମ୍ପାନୀର କର୍ମଚାରୀମାନଙ୍କର ଅନ୍ୟାୟ ଉପାୟରେ ଅର୍ଥୋପାର୍ଜନର ପଥ ବନ୍ଦ କରିଦେଇଥିଲେ । ସେ ଉକ୍ତ କର୍ମଚାରୀମାନଙ୍କର ବେତନ ବୃଦ୍ଧି କରିଥିଲେ । ପ୍ରତି ଜିଲ୍ଲାର କଲେକ୍ଟରଙ୍କ ହାତରେ କେବଳ ଖଜଣା ଅଦାୟ କରିବାର ଭାର ଦିଆଯାଇଥିଲା । ଦେୱାନୀ ଓ ଫୌଜଦାରୀ ମକଦ୍ଦମା ବିଚାର କରିବାଲାଗି ଜଣେ ଜଣେ ଇଂରେଜ ଜଜ୍ ନିଯୁକ୍ତ ହୋଇଥିଲେ । ଜିଲ୍ଲା ଜଜ୍‌ମାନେ ଯେଉଁ ମକଦ୍ଦମାମାନ ନିଷ୍ପତ୍ତି କରୁଥିଲେ ତାହାର ଅପିଲ୍ ଶୁଣିବା ସକାଶେ କଲିକତା, ମୁର୍ଶିଦାବାଦ, ଢାକା ଓ ପାଟନା ଏହି ଚାରି ସ୍ଥାନରେ ଗୋଟିଏ ଗୋଟିଏ ଉଚ୍ଚ ବିଚାରାଳୟ ସ୍ଥାପନ କରାଯାଇଥିଲା । ଏମାନଙ୍କ ନିଷ୍ପତ୍ତିରେ କେହି ଅସନ୍ତୁଷ୍ଟ ହେଲେ ସେ ସଦର ନିଜାମତ ଅଦାଲତରେ ଅପିଲ୍ କରିପାରୁଥିଲେ ।

ବଙ୍ଗଦେଶର ଚିରସ୍ଥାୟୀ ବନ୍ଦୋବସ୍ତ—ହେଷ୍ଟିଂସଙ୍କ ସମୟରେ ରାଜସ୍ୱର ଅନାଦାୟ ହେଉଥିବାରୁ ପ୍ରତିବର୍ଷ ନିଲାମଦ୍ୱାରା ଅନେକ ଜମିଦାରୀ ବିକ୍ରୟ କରାଯାଉଥିଲା । ନୂତନ ଜମିଦାରମାନେ ଅତ୍ୟନ୍ତ ନିଷ୍ଠୁରଭାବରେ ପ୍ରଜାମାନଙ୍କଠାରୁ ଖଜଣା ଅଦାୟ କରୁଥିଲେ । ତଥାପି ସେମାନେ କମ୍ପାନୀଙ୍କ ନିର୍ଦ୍ଦିଷ୍ଟ ରାଜସ୍ୱ ଅଦାୟ କରି ଦେଇ ପାରୁ ନ ଥିଲେ । ଏଣୁ କମ୍ପାନୀଙ୍କର ଅତ୍ୟନ୍ତ କ୍ଷତି ହେଉଥିଲା । ପ୍ରତିବର୍ଷ ରାଜସ୍ୱର ପରିମାଣ ମଧ୍ୟ ବଦଳୁଥିଲା । ଏହି ସବୁ ଅନିଷ୍ଟ ନିବାରଣ କରିବା ପାଇଁ କର୍ଣ୍ଣୱାଲିସ୍ ୧୭୯୧ରେ ଜମିଦାରମାନଙ୍କ ସହିତ ୧୦ ବର୍ଷ ସ୍ଥାୟୀ ଖଜଣାର ବନ୍ଦୋବସ୍ତ କଲେ । ଏପ୍ରକାର ବନ୍ଦୋବସ୍ତ ଲାଭଜନକ ହେବାର ଦେଖି ସେ ୧୭୯୩ରେ ସେହି ବନ୍ଦୋବସ୍ତକୁ ଚିରସ୍ଥାୟୀ କଲେ । ଏହାଦ୍ୱାରା ଜମିଦାରମାନଙ୍କର ସୁବିଧା ହେଲା, କିନ୍ତୁ ପ୍ରଜାମାନଙ୍କର କିଛି ସୁବିଧା ହେଲା ନାହିଁ । ଜମିଦାରମାନେ ନିର୍ଦ୍ଦିଷ୍ଟ ରାଜସ୍ୱ କମ୍ପାନୀଙ୍କୁ ଦେଲେ, କିନ୍ତୁ ସେମାନେ ଇଚ୍ଛାନୁସାରେ ପ୍ରଜାମାନଙ୍କ ଉପରେ କର ବଢ଼ାଇଲେ ।

ଦ୍ୱିତୀୟ ମହୀଶୂରସମର—୧୭୯୦ରେ ମହୀଶୂରପତି ଟିପୁ ସୁଲତାନ ଇଂରେଜମାନଙ୍କ ମିତ୍ର ରାଜ୍ୟ ତ୍ରିବାଙ୍କୋଡ଼ ଆକ୍ରମଣ କଲେ । ଇଂରେଜମାନେ ତ୍ରିବାଙ୍କୋଡ଼-ରାଜାଙ୍କ ପକ୍ଷ ନେଇ ଯୁଦ୍ଧ ଘୋଷଣା କଲେ । ନିଜାମ ଓ ମରହଟ୍ଟାମାନେ ଇଂରେଜମାନଙ୍କୁ ସାହାଯ୍ୟ ଦେଇଥିଲେ । ଏହି ସମର ତିନି ବର୍ଷ ପର୍ଯ୍ୟନ୍ତ ଚାଲିଥିଲା । ୧୭୯୨ରେ ଶ୍ରୀରଙ୍ଗପତ୍ତନରେ ଏକ ସନ୍ଧି ହେଲା । ଟିପୁ ଯୁଦ୍ଧବ୍ୟୟ ସକାଶେ ତିନି-କୋଟି ଟଙ୍କା ଦେଲେ, ଅଉ ନିଜ ରାଜ୍ୟରୁ ଅର୍ଦ୍ଧେ ଛାଡ଼ି ଦେଲେ । ନିଜାମ ଓ ମରହଟ୍ଟାମାନେ ଏହି ରାଜ୍ୟକୁ ସମାନ ଅଂଶରେ ବାଣ୍ଟିନେଲେ ।



ଟିପୁ ସୁଲତାନ ।

କର୍ଣ୍ଣୱାଲିସ ୧୭୯୩ ରେ ଭାରତ ତ୍ୟାଗ କଲେ । ସରଜନ୍ ଶୋର ୧୭୯୩ରୁ ୧୭୯୮ ପର୍ଯ୍ୟନ୍ତ ଗବର୍ଣ୍ଣର ଜେନେରାଲ୍ ହେଲେ । ଏ ଜଣେ କମ୍ପାନିର ଦକ୍ଷ କର୍ମଚାରୀ ଥିଲେ । ଏ କୌଣସି ପକ୍ଷ ଅବଲମ୍ବନ ନ କରି-ବାର ନୀତି ଅନୁସରଣ କରିଥିଲେ । ଏହାର ଫଳ ଏହି ହେଲା ଯେ ନିଜାମ ମରହଟ୍ଟାମାନଙ୍କ ଦ୍ୱାରା ସମ୍ପୂର୍ଣ୍ଣରୂପେ ପରାଜିତ ହୋଇ ସେମାନଙ୍କ, ତାହାଙ୍କ ରାଜ୍ୟର ଅର୍ଦ୍ଧେ ଦେବାକୁ ବାଧ୍ୟ ହୋଇଥିଲେ ।

ମାର୍କିସ ଅବ୍ ୱେଲେସ୍ଲି —

ପରସ୍ପର-ସାହାଯ୍ୟକାରୀ ସନ୍ଧି—ମହୀସୁରସମର ଓ ମରହଟ୍ଟାସମର ।



ୱେଲେସଲି ।

ୱେଲେସଲି ୧୭୯୮ ରେ ଶାସନଭାର ଗ୍ରହଣ କରିଥିଲେ। ଇଂରେଜ ରାଜ୍ୟ ଭାରତର ସର୍ବତ୍ର ସ୍ଥାପିତ ହେବ, ଇଂରେଜ ଶକ୍ତି ଅଖଣ୍ଡ ଓ ଅପ୍ରତିହତ ରହିବ ଏବଂ ଭାରତର ରାଜାମାନେ ଇଂରେଜ ସାମ୍ରାଜ୍ୟର ସମ୍ପୂର୍ଣ୍ଣ ଅଧୀନ ରହିବେ, ଏଗୁଡ଼ିକ ତାହାଙ୍କୁ ଭାରତ ପକ୍ଷରେ ମଙ୍ଗଳଜନକ ବୋଲି ବୋଧ ହୋଇଥିଲା ।

ଫରାସି ପ୍ରାଧାନ୍ୟ :—ଏହି ସମୟରେ ଫରାସି ସୈନ୍ୟାଧ୍ୟକ୍ଷମାନେ କେତେକ ଦେଶୀ ରାଜାମାନଙ୍କ ବେତନଭୋଗୀ ହୋଇ ହାଇଦ୍ରାବାଦର ସୈନ୍ୟସଂସ୍କାର କରୁଥିଲେ। ସିନ୍ଧିଆ ଫରାସିସୈନ୍ୟମାନଙ୍କୁ ନିଜ ସୈନ୍ୟଦଳରେ ନିଯୁକ୍ତ କରିଥିଲେ । ମହୀସୁରର ଟିପୁ ସୁଲତାନ ଫରାସିମାନଙ୍କ ସଙ୍ଗେ ମିଳିତ ହୋଇଥିଲେ। ୱେଲେସଲି ଭାରତକୁ ଆସି ଉପରୋକ୍ତ ତିନି ରାଜ୍ୟରେ ଏପ୍ରକାର ଫରାସିପ୍ରାଧାନ୍ୟ ଅବଲୋକନ କରିଥିଲେ । ଏହି ସମୟରେ ଫ୍ରାନ୍ସରେ ସାଧାରଣତନ୍ତ୍ର ଶାସନପ୍ରଣାଳୀ ସ୍ଥାପିତ ହେବାରୁ ଟିପୁ ଆପଣାକୁ ଉକ୍ତ ସାଧାରଣତନ୍ତ୍ରସମିତିର ଜଣେକ ସଭ୍ୟ ବୋଲି ଘୋଷଣା କଲେ । ଅଧିକନ୍ତୁ ମଧ୍ୟ ନେପୋଲିୟନ ଏହି ସମୟରେ ମିସରରେ ଥାଇ ଭାରତ-ଆକ୍ରମଣର କଳ୍ପନା କରୁଥିଲେ ।

ଲର୍ଡ୍ ୱେଲେସଲିଙ୍କ ପୂର୍ବେ ଭାରତ :—କ୍ଲାଇଭଙ୍କ ଅସ୍ତ୍ରବଳ ଓ ହେଷ୍ଟିଂସଙ୍କ ରାଜନୀତିରେ ଇଂରେଜମାନେ ବଙ୍ଗପ୍ରଦେଶର ଏକମାତ୍ର ଅଧୀଶ୍ୱର ହୋଇଥିଲେ । ଅଯୋଧ୍ୟାର ନବାବ ଇଂରେଜମାନଙ୍କର ଅଧୀନରେ ଥିଲେ । ଦିଲ୍ଲୀର ସମ୍ରାଟଙ୍କ କ୍ଷମତା ସମ୍ପୂର୍ଣ୍ଣ ହ୍ରାସ ହୋଇଥିଲା । ଟିପୁ ସୁଲତାନ, ନିଜାମ, ପେଶବା ବାଜିରାଓ, ସିନ୍ଧିୟା, ହୋଲକାର ଏବଂ ନାଗପୁରର ମରହଟ୍ଟାମାନେ କ୍ଷମତାପନ୍ନ ହୋଇଥିଲେ । ୱେଲେସଲି ଏମାନଙ୍କ କ୍ଷମତା ଚୂର୍ଣ୍ଣକରି ଇଂରେଜମାନଙ୍କର ଏକାଧିପତ୍ୟ ସ୍ଥାପନ-ନୀତି ସଙ୍କଳ୍ପ କଲେ ।

"ପରସ୍ପର-ସାହାଯ୍ୟକାରୀ ସନ୍ଧି" :—ୱେଲେସଲି "ପରସ୍ପର-ସାହାଯ୍ୟକାରୀ ସନ୍ଧି" ନାମକ ଏକ ରାଜନୀତି ଅନୁସରଣ କଲେ । ଏଥିର ସର୍ତ୍ତ ଏହି :—ଦେଶୀୟ ରାଜାମାନେ ସେମାନଙ୍କର ରାଜନୈତିକ ସ୍ୱାଧୀନତା ଇଂରେଜ କମ୍ପାନୀଙ୍କ ହସ୍ତରେ ଅର୍ପଣ କରିବେ ଏବଂ କମ୍ପାନୀ ସେମାନଙ୍କୁ ବିଦେଶୀୟ ଆକ୍ରମଣରୁ ରକ୍ଷା କରିବେ । ଦେଶୀୟ ରାଜାମାନେ କମ୍ପାନୀଙ୍କ ବିନାନୁମତିରେ ଅନ୍ୟ କୌଣସି ଇଉରୋପୀୟ ଜାତିର ସାହାଯ୍ୟ ଗ୍ରହଣ କରିବେ ନାହିଁ, କିମ୍ବା ଭାରତର କୌଣସି ରାଜାଙ୍କ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ ହେବେ ନାହିଁ । ବଡ଼ ବଡ଼ ରାଜାମାନେ ସେମାନଙ୍କ ରାଜ୍ୟରେ ଇଂରେଜସେନାପତିଦ୍ୱାରା ଚାଳିତ ଏକ ଏକ ଦଳ ସୈନ୍ୟ ରଖିବେ ଏବଂ ସୈନ୍ୟପ୍ରତିପୋଷଣର ବ୍ୟୟନିର୍ବାହ ନିମନ୍ତେ କମ୍ପାନୀଙ୍କୁ କେତେକ ରାଜ୍ୟ ଦେବେ ।

ନିଜାମଙ୍କ ସହ ସନ୍ଧି —୧୭୯୮ରେ ନିଜାମ ସମସ୍ତଙ୍କ ମଧ୍ୟରେ ଅତି ଦୁର୍ବଳ ଥିବାରୁ ୱେଲେସଲି ପ୍ରଥମେ ତାହାଙ୍କ ସଙ୍ଗେ ସନ୍ଧି କଲେ । ଉକ୍ତ ସନ୍ଧି ଅନୁସାରେ ନିଜାମ ଫରାସି ସୈନ୍ୟ ଓ ସେନାପତି ପରିବର୍ତ୍ତେ ଇଂରେଜ ସୈନ୍ୟ ଓ ସେନାପତି ରଖିଲେ ।

ଚତୁର୍ଥ ମହୀଶୂରସମର ୧୭୯୯:—ଟିପୁ ସୁଲତାନ ପ୍ରକାଶ୍ୟଭାବରେ ଫରାସିମାନଙ୍କ ସଙ୍ଗେ ଚକ୍ରାନ୍ତ କରିବାରୁ ୱେଲେସ୍‌ଲି ତାଙ୍କ ସଙ୍ଗେ ପରସ୍ପର-ସାହାଯ୍ୟକୃତ ସନ୍ଧି ସ୍ଥାପନ କରିବାର ପ୍ରସ୍ତାବ କଲେ । ମାତ୍ର ଟିପୁ ତାହା ଅଗ୍ରାହ୍ୟ କଲେ । ଟିପୁଙ୍କ ବିରୁଦ୍ଧେ ଯୁଦ୍ଧଘୋଷଣା ହେଲା । ୱେଲେସ୍‌ଲି ସ୍ୱୟଂ ମାନ୍ଦ୍ରାଜ ଯାଇ ଯୁଦ୍ଧ ଚଳାଇଥିଲେ । ନିଜାମ ଓ ମରହଟ୍ଟାମାନେ ଇଂରେଜମାନଙ୍କୁ ସାହାଯ୍ୟ ଦେଲେ । ଟିପୁ ଦୁଇଗୋଟି ଯୁଦ୍ଧରେ ପରାଜିତ ହୋଇ ଶ୍ରୀରଙ୍ଗପତ୍ତନରେ ଆଶ୍ରୟ ନେଲେ । ଇଂରେଜ ସୈନ୍ୟ ଶ୍ରୀରଙ୍ଗପତ୍ତନ ଅବରୋଧ କଲେ । ଟିପୁ ଅତ୍ୟନ୍ତ ବୀରତ୍ୱ ସହ ଯୁଦ୍ଧ କରି ନିହତ ହେଲେ । ୱେଲେସ୍‌ଲି ମହୀଶୂରର ମଧ୍ୟାଂଶ ହାୟଦର-ଅଲୀଙ୍କ ଦ୍ୱାରା ପଦଚ୍ୟୁତ ହିନ୍ଦୁରାଜାଙ୍କର ଏକ ବଂଶଧରଙ୍କୁ ପ୍ରଦାନ କଲେ । ଅବଶିଷ୍ଟ ରାଜ୍ୟ ଇଂରେଜ, ନିଜାମ ଓ ମରହଟ୍ଟାମାନେ ବାଣ୍ଟିନେଲେ । ଟିପୁଙ୍କ ପୁତ୍ରମାନେ ଉପଯୁକ୍ତ ବୃତ୍ତି ପାଇ ପ୍ରଥମେ ଭେଲୋର, ତତ୍ପରେ କଲିକତାରେ ବାସ କଲେ ।

ଦ୍ୱିତୀୟ ମରହଟ୍ଟାସମରର ପୂର୍ବେ ମରହଟ୍ଟାମାନଙ୍କର ଅବସ୍ଥା:—ମର-ହଟ୍ଟାମାନେ ଟିପୁଙ୍କ ବିରୁଦ୍ଧେ ଇଂରେଜମାନଙ୍କୁ ସାହାଯ୍ୟ ଦେଇଥିଲେହେଁ ଇଂରେଜମାନଙ୍କ ପ୍ରତି ସେମାନଙ୍କର ମିତ୍ରଭାବ ନ ଥିଲା । ୧୭୯୫ ରେ ରଘୋବାଙ୍କ ପୁତ୍ର ବାଜିରାଓ, ମାଧବରାଓ ନାରାୟଣଙ୍କ ପରେ ପେଶବା ହେଲେ । କିନ୍ତୁ ନାନାଫଡ଼ନାବିସ୍ ସେ ସମୟରେ ମରହଟ୍ଟାମାନଙ୍କର ସମସ୍ତ ରାଜ-ନୈତିକ କାର୍ଯ୍ୟ ଚଳାଉଥିଲେ । ସେ ମରହଟ୍ଟାରାଜ୍ୟରେ ପରସ୍ପର-ସାହାଯ୍ୟକୃତ ସନ୍ଧି ପ୍ରବର୍ତ୍ତନ କରିବାରେ ବାଧା ଦେଲେ । ଏହି ସମୟରେ ମରହଟ୍ଟାଜାତି ଧ୍ୱଂସ ହେବାର ସମସ୍ତ ଚିହ୍ନ ଦେଖାଯାଇଥିଲା; ଆପଣା ଆପଣା ମଧ୍ୟରେ କଳହ ଓ ଈର୍ଷା ଜାତ ହୋଇଥିଲା । ପ୍ରତ୍ୟେକ ମରହଟ୍ଟା-ଦଳ ବିଶେଷତଃ ସିନ୍ଧିଆ ଓ ହୋଲକାର ଅନ୍ୟାନ୍ୟ ମରହଟ୍ଟାମାନଙ୍କୁ ଦମନ

କରିବାଲାଗି ଚେଷ୍ଟା କରୁଥିଲେ । ଯେତେବେଳ ପର୍ଯ୍ୟନ୍ତ ନାନାଫର୍ଣ୍ଣାବିସ୍ ଜୀବିତ ଥିଲେ, ସେ ଯେକୌଣସି ପ୍ରକାରେ ବିଭିନ୍ନ ପ୍ରକୃତିର ମରହଟ୍ଟାଦଳମାନଙ୍କୁ ଏକମତରେ ଚଳାଉଥିଲେ । କିନ୍ତୁ ତାହାଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ ସେସବୁ ତିରୋହିତ ହେଲା । ଏପରି ସମୟରେ ସମସ୍ତ ମରହଟ୍ଟାଦଳମାନଙ୍କୁ ଚଳାଇ କାର୍ଯ୍ୟ କରିବା ବ୍ୟକ୍ତି ନିତାନ୍ତ ଆବଶ୍ୟକ ; ମାତ୍ର ପେଶବା ବାଜିରାଓଙ୍କର ସେପରି ଦକ୍ଷତା ଓ ଯୋଗ୍ୟତା ନ ଥିଲା । ଭୟାନକ ଗୋଲମାଲ ଆରମ୍ଭ ହେଲା । ସିନ୍ଧିଆ ଅତ୍ୟନ୍ତ ପରାକ୍ରମୀ ହୋଇ ପେଶବାଙ୍କୁ ଆପଣା ଆୟତ୍ତରେ ରଖିଥିଲେ । କିନ୍ତୁ ସିନ୍ଧିଆ ଓ ପେଶବାଙ୍କର ଯୁକ୍ତ-ସୈନ୍ୟଦଳକୁ ହୋଲକର ପରାସ୍ତ କରି ଅନ୍ୟ ଏକ ଜଣଙ୍କୁ ପେଶବା ବୋଲି ଘୋଷଣା କଲେ ।

ଦ୍ୱିତୀୟ ମରହଟ୍ଟାସମର :—ପେଶବା ଦ୍ୱିତୀୟ ବାଜିରାଓ ହୋଲକାରଙ୍କ ଦ୍ୱାରା ପରାଜିତ ହୋଇ ଇଂରେଜମାନଙ୍କର ସାହାଯ୍ୟ ପ୍ରାର୍ଥନା କଲେ । ବେସିନରେ ୧୮୦୨ ରେ ଗୋଟିଏ ସନ୍ଧି ହେଲା । ଇଂରେଜମାନେ ବାଜିରାଓଙ୍କୁ ପେଶବାପଦ ଦେବାଲାଗି ଅଙ୍ଗୀକାର କଲେ । ବାଜିରାଓ ଯୁଦ୍ଧବ୍ୟୟ ସକାଶେ ଇଂରେଜମାନଙ୍କୁ ନିଜରାଜ୍ୟର କେତେକ ଅଂଶ ଦେଲେ ଏବ ଅନ୍ୟାନ୍ୟ ରାଜାମାନଙ୍କ ସଙ୍ଗେ କୌଣସି ପ୍ରକାର ସମ୍ବନ୍ଧ ରଖିବେ ନାହିଁ ବୋଲି ଅଙ୍ଗୀକାର କଲେ । ପେଶବାଙ୍କ ଏହି କାର୍ଯ୍ୟରେ ସିନ୍ଧିଆ ଓ ନାଗପୁରର ଭୋଁସଲା ଅତ୍ୟନ୍ତ ରାଗାନ୍ୱିତ ହେଲେ । ବାଜିରାଓ ମଧ୍ୟ ଅନୁତାପ କରି ସେମାନଙ୍କର ସାହାଯ୍ୟ ଲୋଡିଲେ । ଦ୍ୱିତୀୟ ମରହଟ୍ଟାସମର ଆରମ୍ଭ ହେଲା । ଇଂରେଜମାନଙ୍କର ସର ଆର୍ଥର ୱେଲେସଲି (ଡିଉକ ଅବ ୱେଲିଙ୍ଗଟନ) ଓ ଜେନେରାଲ୍ ଲେକ ସେନାପତି ଥିଲେ । ଦାକ୍ଷିଣାତ୍ୟରେ ସର୍ ଆର୍ଥର ଏବ ଉତ୍ତରଭାରତରେ ଲେକ୍ ଯୁଦ୍ଧ ଚଳାଉଥିଲେ । ୧୮୦୩ ର ସିତମ୍ବର ମାସରେ ସର୍ ଆର୍ଥର

ତୃତୀୟ ମହୀଶୂରସମର ୧୭୯୯:—ଟିପୁ ସୁଲତାନ ପ୍ରକାଶ୍ୟଭାବରେ ଫରାସିମାନଙ୍କ ସଙ୍ଗେ ଚକ୍ରାନ୍ତ କରିବାରୁ ୱେଲେସ୍‌ଲି ତାଙ୍କ ସଙ୍ଗେ ପରସ୍ପର-ସାହାଯ୍ୟମୂଳକ ସନ୍ଧି ସ୍ଥାପନ କରିବାର ପ୍ରସ୍ତାବ କଲେ । ମାତ୍ର ଟିପୁ ତାହା ଅଗ୍ରାହ୍ୟ କଲେ । ଟିପୁଙ୍କ ବିରୁଦ୍ଧେ ଯୁଦ୍ଧଘୋଷଣା ହେଲା । ୱେଲେସ୍‌ଲି ସ୍ୱୟଂ ମାନ୍ଦ୍ରାଜ ଯାଇ ଯୁଦ୍ଧ ଚଳାଇଥିଲେ । ନିଜାମ ଓ ମରହଟ୍ଟାମାନେ ଇଂରେଜମାନଙ୍କୁ ସାହାଯ୍ୟ ଦେଲେ । ଟିପୁ ଦୁଇଗୋଟି ଯୁଦ୍ଧରେ ପରାଜିତ ହୋଇ ଶ୍ରୀରଙ୍ଗପତ୍ତନରେ ଆଶ୍ରୟ ନେଲେ । ଇଂରେଜ ସୈନ୍ୟ ଶ୍ରୀରଙ୍ଗପତ୍ତନ ଅବରୋଧ କଲେ । ଟିପୁ ଅତ୍ୟନ୍ତ ବୀରତ୍ୱ ସହ ଯୁଦ୍ଧ କରି ନିହତ ହେଲେ । ୱେଲେସ୍‌ଲି ମହୀଶୂରର ମଧ୍ୟାଂଶ ହାଇଦରଅଲିଙ୍କ ଦ୍ୱାରା ପଦଚ୍ୟୁତ ହିନ୍ଦୁରାଜାଙ୍କର ଏକ ବଂଶଧରଙ୍କୁ ପ୍ରଦାନ କଲେ । ଅବଶିଷ୍ଟ ରାଜ୍ୟ ଇଂରେଜ, ନିଜାମ ଓ ମରହଟ୍ଟାମାନେ ବାଣ୍ଟିନେଲେ । ଟିପୁଙ୍କ ପୁତ୍ରମାନେ ଉପଯୁକ୍ତ ବୃତ୍ତି ପାଇ ପ୍ରଥମେ ଭେଲୋର, ତହିଁପରେ କଲିକତାରେ ବାସ କଲେ ।

ଦ୍ୱିତୀୟ ମରହଟ୍ଟାସମରର ପୂର୍ବେ ମରହଟ୍ଟାମାନଙ୍କର ଅବସ୍ଥା:—ମରହଟ୍ଟାମାନେ ଟିପୁଙ୍କ ବିରୁଦ୍ଧେ ଇଂରେଜମାନଙ୍କୁ ସାହାଯ୍ୟ ଦେଇଥିଲେହେଁ ଇଂରେଜମାନଙ୍କ ପ୍ରତି ସେମାନଙ୍କର ମିତ୍ରଭାବ ନ ଥିଲା । ୧୭୯୫ ରେ ରାଘବାଙ୍କ ପୁତ୍ର ବାଜିରାଓ, ମାଧବରାଓ ନାରାୟଣଙ୍କ ପରେ ପେଶବା ହେଲେ । କିନ୍ତୁ ନାନାଫଡ଼ନାବିସ୍ ସେ ସମୟରେ ମରହଟ୍ଟାମାନଙ୍କର ସମସ୍ତ ରାଜନୈତିକ କାର୍ଯ୍ୟ ଚଳାଉଥିଲେ । ସେ ମରହଟ୍ଟାରାଜ୍ୟରେ ପରସ୍ପର-ସାହାଯ୍ୟମୂଳକ ସନ୍ଧି ପ୍ରବର୍ତ୍ତନ କରିବାରେ ବାଧା ଦେଲେ । ଏହି ସମୟରେ ମରହଟ୍ଟାଜାତି ବିଧ୍ୱସ୍ତ ହେବାର ସମସ୍ତ ଚିହ୍ନ ଦେଖାଯାଉଥିଲା; ଆପଣା ଆପଣା ମଧ୍ୟରେ କଳହ ଓ ଈର୍ଷା ଜାତ ହୋଇଥିଲା । ପ୍ରତ୍ୟେକ ମରହଟ୍ଟା-ଦଳ ବିଶେଷତଃ ସିନ୍ଧିଆ ଓ ହୋଲକାର ଅନ୍ୟାନ୍ୟ ମରହଟ୍ଟାମାନଙ୍କୁ ଦମନ

କରିବାଲାଗି ଚେଷ୍ଟା କରୁଥିଲେ । ଯେତେଦିନ ପର୍ଯ୍ୟନ୍ତ ନାନାଫର୍ଣ୍ଣା-ବିସ୍ ଜୀବିତ ଥିଲେ, ସେ ଯେକୌଣସି ପ୍ରକାରେ ବିଭିନ୍ନ ପ୍ରକୃତିର ମରହଟ୍ଟା-ଦଳମାନଙ୍କୁ ଏକମତରେ ଚଳାଉଥିଲେ । କିନ୍ତୁ ତାହାଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ ସେସବୁ ତିରୋହିତ ହେଲା । ଏପରି ସମୟରେ ସମସ୍ତ ମରହଟ୍ଟା-ଦଳମାନଙ୍କୁ ଚାଳନା କାର୍ଯ୍ୟ କରିବା ବ୍ୟକ୍ତି ନିତାନ୍ତ ଆବଶ୍ୟକ ; ମାତ୍ର ପେଶବା ବାଜିରାଓଙ୍କର ସେପରି ଦକ୍ଷତା ଓ ଯୋଗ୍ୟତା ନ ଥିଲା । ଭୟାନକ ଗୋଲମାଲ ଆରମ୍ଭ ହେଲା । ସିନ୍ଧିୟା ଅତ୍ୟନ୍ତ ପରାକ୍ରମୀ ହୋଇ ପେଶବାଙ୍କୁ ଆପଣା ଆୟତ୍ତରେ ରଖିଥିଲେ । କିନ୍ତୁ ସିନ୍ଧିୟା ଓ ପେଶବାଙ୍କର ଯୁକ୍ତ-ସୈନ୍ୟଦଳକୁ ହୋଲକର ପରାସ୍ତ କରି ଅଭି ଏକ ଜଣଙ୍କୁ ପେଶବା ବୋଲି ଘୋଷଣା କଲେ ।

ଦ୍ୱିତୀୟ ମରହଟ୍ଟାସମର :—ପେଶବା ବିଷୟ ବାଜିରାଓ ହୋଲକାରଙ୍କ ଦ୍ୱାରା ପରାଜିତ ହୋଇ ଇଂରେଜମାନଙ୍କର ସାହାଯ୍ୟ ପ୍ରାର୍ଥନା କଲେ । ବେସିନରେ ୧୮୦୨ ରେ ଗୋଟିଏ ସନ୍ଧି ହେଲା । ଇଂରେଜମାନେ ବାଜିରାଓଙ୍କୁ ପେଶବାପଦ ଦେବାଲାଗି ଅଙ୍ଗୀକାର କଲେ । ବାଜିରାଓ ସୁବିଧାୟ ସକାଶେ ଇଂରେଜମାନଙ୍କୁ ନିଜରାଜ୍ୟର କେତେକ ଅଂଶ ଦେଲେ ଏବଂ ଅନ୍ୟାନ୍ୟ ରାଜାମାନଙ୍କ ସଙ୍ଗେ କୌଣସି ପ୍ରକାର ସମ୍ବନ୍ଧ ରଖିବେ ନାହିଁ ବୋଲି ଅଙ୍ଗୀକାର କଲେ । ପେଶବାଙ୍କ ଏହି କାର୍ଯ୍ୟରେ ସିନ୍ଧିୟା ଓ ନାଗପୁରର ଭୋନ୍‌ସ୍ଲେ ଅତ୍ୟନ୍ତ ରାଗାନ୍ୱିତ ହେଲେ । ବାଜିରାଓ ମଧ୍ୟ ଅନୁତାପ କରି ସେମାନଙ୍କର ସାହାଯ୍ୟ ଲୋଡିଲେ । ଦ୍ୱିତୀୟ ମରହଟ୍ଟାସମର ଆରମ୍ଭ ହେଲା । ଇଂରେଜମାନଙ୍କର ସର ଆର୍ଥର ୱେଲେସଲି (ଡିଉକ ଅଫ ୱେଲିଙ୍ଗଟନ) ଓ ଜେନେରାଲ୍ ଲେକ ସେନାପତି ଥିଲେ । ଦାକ୍ଷିଣାତ୍ୟରେ ସର୍ ଆର୍ଥର ଏବଂ ଉତ୍ତରଭାରତରେ ଲେକ୍ ଯୁଦ୍ଧ ଚଳାଉଥିଲେ । ୧୮୦୩ ର ସେପ୍ଟେମ୍ବର ମାସରେ ସର୍ ଆର୍ଥର

ସିନ୍ଧିଆଙ୍କ ସୈନ୍ୟମାନଙ୍କୁ ଅସାଇ ଯୁଦ୍ଧରେ ପରାସ୍ତ କଲେ । ନଭେମ୍ବର ମାସରେ ସେ ସିନ୍ଧିଆ ଓ ଭୋଁସଲାଙ୍କର ଯୁକ୍ତସୈନ୍ୟମାନଙ୍କୁ ଅରଗମ ଯୁଦ୍ଧରେ ସମ୍ପୂର୍ଣ୍ଣରୂପେ ପରାଜିତ ଓ ବିଧ୍ୱସ୍ତ କରିଥିଲେ । ଇତ୍ୟବସରେ ଲେକ୍ ସାହେବ ଦିଲ୍ଲୀ ଓ ଆଗ୍ରା ଦଖଲ କରି ସିନ୍ଧିଆଙ୍କ ଫରାସି ସୈନ୍ୟ-ମାନଙ୍କୁ ଲସବାରି ଯୁଦ୍ଧରେ ବିଧ୍ୱସ୍ତ କଲେ । ପରାଜିତ ମରହଟ୍ଟା ସର୍ଦ୍ଦାର-ମାନେ ଇଂରେଜମାନଙ୍କ ସହ ସନ୍ଧି ସ୍ଥାପନ କଲେ । ଭୋଁସଲେ ଇଂରେଜମାନଙ୍କୁ ଓଡ଼ିଶା ଓ ପଶ୍ଚିମବରାର, ଏବଂ ସିନ୍ଧିଆ ସେମାନଙ୍କୁ ଗଙ୍ଗା ଓ ଯମୁନା ନଦୀର ମଧ୍ୟବର୍ତ୍ତୀ ଦୋଆବ ଏବଂ ରାଜପୁତାନା ଓ ଦାକ୍ଷିଣାତ୍ୟର ଅନେକଗୁଡ଼ିଏ ଅଧିକୃତ ସ୍ଥାନ ଦେଇ ମୁକ୍ତି ଲଭିଥିଲେ ।

ହୋଲକାରଙ୍କ ସହ ଯୁଦ୍ଧ:—ହୋଲକାର ଅତ୍ୟନ୍ତ ପରାକ୍ରମୀ ହୋଇ ରାଜପୁତାନାରେ ଇଂରେଜମାନଙ୍କ ମିତ୍ରରାଜ୍ୟ ଲୁଣ୍ଠନ କରି ଇଂରେଜମାନଙ୍କୁ ଚିଡ଼ାଇ ମାରିବାରୁ ୱେଲେସ୍‌ଲି ତାହାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ (୧୮୦୪) । ପ୍ରଥମେ ଇଂରେଜମାନେ ପରାଜିତ ହୋଇଥିଲେ । କର୍ଣ୍ଣେଲ ମନସନଙ୍କ ଅଧୀନରେ ଯୁଦ୍ଧ କରୁଥିବା ଇଂରେଜ ସୈନ୍ୟ ସମ୍ପୂର୍ଣ୍ଣରୂପେ ଧ୍ୱଂସ ପାଇଥିଲେ । ପରେ ଜେନେରାଲ ଲେକ୍ ହୋଲକାରଙ୍କୁ ଦିଗ୍ ଓ ଫରକ୍କାବାଦରେ ପରାସ୍ତ କଲେ । ହୋଲ-କାର ଭରତପୁରରାଜାଙ୍କ ଦୁର୍ଗରେ ଆଶ୍ରୟ ନେଲେ । ଲେକ୍ ଅନେକ ଚେଷ୍ଟା କରି ଭରତପୁର ଅଧିକାର କରି ପାରିଲେ ନାହିଁ । କିନ୍ତୁ ସନ୍ଧି ହେବାରୁ ହୋଲକାର ଭରତପୁର ତ୍ୟାଗ କଲେ ।

ୱେଲେସ୍‌ଲିଙ୍କ ଅମଳରେ କମ୍ପାନିଙ୍କ ଶକ୍ତି ଓ ରାଜ୍ୟ ବୃଦ୍ଧି:—ମହୀସୁରର କ୍ଷମତା ଚୂର୍ଣ୍ଣ ହୋଇଥିଲା, ଏବଂ ରାଜ୍ୟ ସଂକ୍ଷିପ୍ତ ହୋଇ ଇଂରେଜମାନଙ୍କ ଦ୍ୱାରା ନିଯୁକ୍ତ ଏକ ରାଜାଙ୍କ ହସ୍ତରେ ନ୍ୟସ୍ତ ହୋଇଥିଲା । ନିଜାମ, ଆର୍କଟ, ଅଯୋଧ୍ୟା ଏବଂ ରାଜପୁତ ରାଜାମାନେ ଇଂରେଜମାନଙ୍କର

ଅଧୀନସ୍ଥ ରାଜା ହୋଇ ରହିଥିଲେ । ପେଶବା ମଧ୍ୟ ଇଂରେଜମାନଙ୍କର ପ୍ରାଧାନ୍ୟ ସ୍ୱୀକାର କରିଥିଲେ । ଭୋଁସ୍ଲା, ସିନ୍ଧିଆ ଏବଂ ହୋଲକାରଙ୍କ କ୍ଷମତା ହ୍ରାସ ଲଭିଥିଲା । ୧୮୦୦ ରେ ତାଞ୍ଜୋର ରାଜ୍ୟରେ ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀ ସିଂହାସନ ଦାବି କରିବାରୁ ୱେଲେସ୍ଲି ଏହି ରାଜ୍ୟକୁ ନିଜ ଶାସନରେ ଆଣିଥିଲେ । କର୍ଣ୍ଣାଟର ନବାବ ଟିପୁଙ୍କ ସଙ୍ଗେ ଷଡ଼ଯନ୍ତ୍ର କରିଥିବାରୁ ତାହାଙ୍କ ରାଜ୍ୟ ଇଂରେଜରାଜ୍ୟଭୁକ୍ତ ହୋଇଥିଲା । ଅଯୋଧ୍ୟାର ନବାବ ଅତ୍ୟନ୍ତ ଅତ୍ୟାଚାରୀ ହେବାରୁ ପ୍ରଜାମାନେ ତାଙ୍କ ପ୍ରତି ଅସନ୍ତୁଷ୍ଟ ହେଲେ ଏବଂ ତାଙ୍କ ସୈନ୍ୟମାନେ ମରହଟ୍ଟାମାନଙ୍କ ଆକ୍ରମଣରୁ ଅଯୋଧ୍ୟାକୁ ରକ୍ଷାକରି ପାରିଲେ ନାହିଁ । ତେଣୁ ୱେଲେ-ସ୍ଲି ନବାବଙ୍କୁ ଇଂରେଜ ସୈନ୍ୟ ରଖିବାକୁ କହିଲେ; ଏବଂ ସୈନ୍ୟ-ବ୍ୟୟନିର୍ବାହାର୍ଥ ନବାବ ଇଂରେଜମାନଙ୍କୁ କୋରା, ଏଲାହାବାଦ ଏବଂ ରୋହିଲଖଣ୍ଡ ପ୍ରଦେଶମାନ ଦେଲେ । ଏହିପରି ଇଂରେଜକ୍ଷମତା ଭାର-ତର ସର୍ବତ୍ର ବିସ୍ତୃତ ହୋଇଥିଲା ।

ୱେଲେସ୍ଲି ସବୁବେଳେ ଯୁଦ୍ଧରେ ବ୍ୟାପୃତ ରହିବାରୁ କମ୍ପାନି-ଙ୍କର ଅନେକ ଟଙ୍କା ଖର୍ଚ୍ଚ ହୋଇଥିଲା । କମ୍ପାନୀର ଡିରେକ୍ଟରମାନେ ଏହାଙ୍କ ଉପରେ ଅସନ୍ତୁଷ୍ଟ ହୋଇ ଏହାଙ୍କୁ ଡକାଇ ନେଇଥିଲେ (୧୮୦୫) ।

---

ଲର୍ଡ କର୍ଣ୍ଣୱାଲିସ୍ :—ଡିରେକ୍ଟରମାନେ ୧୮୦୫ ରେ ଦେଶୀୟ ରାଜାମାନଙ୍କ ସଙ୍ଗେ ସନ୍ଧି କରିବା ସକାଶେ ଲର୍ଡ କର୍ଣ୍ଣୱାଲିସ୍‌ଙ୍କୁ ପୁନର୍ବାର ଭାରତକୁ ପଠାଇଥିଲେ । ମାତ୍ର ସେ ଭାରତକୁ ଆସି ଦୁଇମାସ ଭିତରୁ ଗାଜିପୁରରେ ପ୍ରାଣତ୍ୟାଗ କଲେ ।

ସର୍ ଜର୍ଜବାର୍ଲୋ :—ଏ ଜଣେ କମ୍ପାନିର କର୍ମଚାରୀ ଥିଲେ ଏବଂ ୧୮୦୫ରେ ଭାରତର ଶାସନଭାର ନେଲେ । ଡିରେକ୍ଟରମାନଙ୍କ ଉପଦେଶ ଅନୁସାରେ ହୋଲକାର ଏବଂ ସିନ୍ଧିଆଙ୍କ ସଙ୍ଗେ ସନ୍ଧି କରିଥିଲେ । ସେହି ସନ୍ଧିଦ୍ୱାରା ମରହଟ୍ଟାମାନଙ୍କ କ୍ଷମତା ଅକ୍ଷୁଣ୍ଣ ରହିବାରୁ ସେମାନେ ରାଜପୁତାନାରେ ଅତ୍ୟାଚାର ଆରମ୍ଭ କଲେ । ଏହାଙ୍କ ସମୟରେ ମାନ୍ଦ୍ରାଜର ଅନ୍ତର୍ଗତ ଭେଲୋର ନଗରର ସିପାହିମାନେ ବିଦ୍ରୋହୀ ହୋଇଥିଲେ, କିନ୍ତୁ ଏହା ଶୀଘ୍ର ନିବାରିତ ହୋଇଥିଲା (୧୮୦୬) ।

ଲର୍ଡ ମିଣ୍ଟୋ :—ଲର୍ଡ ମିଣ୍ଟୋ ୧୮୦୭ରେ ଭାରତର ଶାସନଭାର ନେଲେ । ମିଣ୍ଟୋ କୌଣସି ଯୁଦ୍ଧରେ ଲିପ୍ତ ନ ହୋଇ ଶାନ୍ତିସ୍ଥାପନରେ ମନୋଯୋଗୀ ହୋଇଥିଲେ । ଏହି ସମୟରେ ଇଉରୋପରେ ଇଂରେଜ ଓ ଫରାସୀମାନଙ୍କର ଯୁଦ୍ଧ ହେଲା । ଫରାସୀମାନେ ଏସିଆବାସୀ ଅନ୍ୟ ରାଜାଙ୍କ ସାହାଯ୍ୟ ନେଇ କାଳେ ଭାରତ ଆକ୍ରମଣ କରି ପାରନ୍ତି ଏହି ଭୟରେ ମିଣ୍ଟୋ ପଞ୍ଜାବପତି ରଣଜିତ୍‌ସିଂହ, କାବୁଲର ଆମୀର, ଓ ପାରସ୍ୟରାଜାଙ୍କ ସଙ୍ଗେ ସନ୍ଧି କଲେ । ମେଟକାଫ୍ ସାହେବଙ୍କୁ ରଣଜିତ୍‌ସିଂହଙ୍କ ପାଖକୁ, ଏଲ୍‌ଫିନ୍‌ଷ୍ଟୋନ୍ ସାହେବଙ୍କୁ କାବୁଲର ଆମୀରଙ୍କ ପାଖକୁ ଏବଂ ମାଲକମ୍ ସାହେବଙ୍କୁ ପାରସ୍ୟରାଜାଙ୍କ ପାଖକୁ ପଠାଯାଇଥିଲା ।

୧୮୧୩ ରେ କମ୍ପାନିର ସନନ୍ଦ ଶେଷ ହେବାରୁ ପୁନର୍ବାର ଆଉ ୨୦ ବର୍ଷ ଦକାଶେ ସନନ୍ଦ ମିଳିଥିଲା । ୧୮୧୩ ରେ ମିଣ୍ଟୋଙ୍କ କାର୍ଯ୍ୟକାଳ ଶେଷ ହେଲା ।

---

ଲର୍ଡ ହେଷ୍ଟିଂସ୍—ନେପାଳ ଓ ମରହଟ୍ଟାମାନଙ୍କ ସହ ସମର ।

ଲର୍ଡ ହେଷ୍ଟିଂସ୍ ୧୮୧୩ ରେ ଭାରତର ଶାସନଭାର ଗ୍ରହଣ

କଲେ । ନେପାଳସମର, ପିଣ୍ଡାରିଯୁଦ୍ଧ ଓ ମରହଟ୍ଟାସମର ଏହାଙ୍କ ଅମଳର ପ୍ରଧାନ ଘଟନା ଅଟେ ।

ନେପାଳସମର ୧୮୧୪-୧୮୧୬ :—ନେପାଳବାସୀ ଗୁର୍ଖାମାନେ ଆପଣାକୁ ରାଜପୁତଜାତୀୟ ବୋଲି ପରିଚୟ ଦିଅନ୍ତି । ଗୁର୍ଖାମାନେ ଏଥିପୂର୍ବ ଦୁଇ ଗବର୍ଣ୍ଣର ଜେନେରାଲଙ୍କ ସମୟରୁ ଇଂରେଜରାଜ୍ୟରେ ପ୍ରବେଶ କରି ଉପଦ୍ରବ କରୁଥିଲେ । ଇଂରେଜମାନେ ନେପାଳରାଜାଙ୍କ ଅନୁରୋଧ କରି ମଧ୍ୟ ଗୁର୍ଖାମାନଙ୍କୁ ନିବର୍ତ୍ତିତ ପାରି ନ ଥିଲେ । ତହୁଁ ହେଷ୍ଟିଂସ୍ ସେମାନଙ୍କୁ ଦମନ କରିବା ସକାଶେ ସୈନ୍ୟ ପ୍ରେରଣ କଲେ । ଜେନେରାଲ ଅକ୍ଟରଲୋନି କୁମାୟୁନ ପ୍ରଦେଶ



ଲର୍ଡ୍ ହେଷ୍ଟିଂସ୍ ।

ଏବଂ ଯମୁନା ଓ ଶତଦ୍ରୁର ମଧ୍ୟବର୍ତ୍ତୀ ପ୍ରଦେଶ ଅଧିକାର କରିବାରୁ ନେପାଳରାଜା ସନ୍ଧି କଲେ । ୧୮୧୫ ରେ ସନ୍ଧି ଭଗ୍ନ ହେବାରୁ ପୁନର୍ବାର ଯୁଦ୍ଧାରମ୍ଭ ହେଲା । ଅକ୍ଟରଲୋନି ପାଟନାରୁ ଯାତ୍ରା କରି ନେପାଳ-ରାଜଧାନୀ କାଠମଣ୍ଡୁର ନିକଟବର୍ତ୍ତୀ ହେବାରୁ ନେପାଳରାଜା ସନ୍ଧି କଲେ । ଏହି ସନ୍ଧି ଅନୁସାରେ ନେପାଳର ରାଜା ନିଜରାଜ୍ୟର କେତେକ ଅଂଶ ଇଂରେଜମାନଙ୍କୁ ଦେଲେ । ସିମଲା, ନୈନିତାଲ ଏବଂ ମସୌରି ଏହି ପ୍ରଦେଶମାନଙ୍କରେ ବିଦ୍ୟମାନ ।

ପିଣ୍ଡାରିଯୁଦ୍ଧ ୧୮୧୭:—ପିଣ୍ଡାରିମାନେ ଲୁଣ୍ଠନକାରୀ ଜାତି ଥିଲେ । ମଧ୍ୟଭାରତର ବିସ୍ତୃତ ଅରଣ୍ୟ-ପ୍ରଦେଶମାନଙ୍କରେ ଏମାନେ ବାସ କରୁଥିଲେ । ଅଫଗାନ୍, ଜାଠ ଓ ମରହଟ୍ଟାମାନଙ୍କ ଦ୍ୱାରା ପିଣ୍ଡାରିମାନଙ୍କର ଦଳ ଗଠିତ ହୋଇଥିଲା । ସେମାନେ କେତେବେଳେ ଶତ ସଂଖ୍ୟାରେ କେତେବେଳେ ଅବା ସହସ୍ର ସଂଖ୍ୟାରେ ଦଳବଦ୍ଧ ହୋଇ ଗ୍ରାମ ଓ ନଗରମାନ ଲୁଣ୍ଠନ କରୁଥିଲେ । ଅମିରଖାଁ, କରିମ ଓ ଚିତୁ ଏହି ତିନି ଜଣ ପିଣ୍ଡାରି ସର୍ଦ୍ଦାରମାନଙ୍କ ମଧ୍ୟରେ ଅତ୍ୟନ୍ତ ପ୍ରସିଦ୍ଧ ଥିଲେ । ହେଷ୍ଟିଂସଙ୍କ ସମୟରେ ଏମାନଙ୍କ ଉପଦ୍ରବ ଅତ୍ୟନ୍ତ ଅଧିକ ହେବାରୁ ଏମାନଙ୍କ ଦମନ କରିବା ସକାଶେ ହେଷ୍ଟିଂସ୍ ବହୁସଂଖ୍ୟକ ସୈନ୍ୟ ପ୍ରେରଣ କରିଥିଲେ । ଯୁଦ୍ଧରେ ଅନେକ ପିଣ୍ଡାରି ନିହତ ହେଲେ । ଅବଶିଷ୍ଟ ଦସ୍ୟୁମାନେ ସ୍ୱବୃତ୍ତି ପରିତ୍ୟାଗ କରି କୃଷି କାର୍ଯ୍ୟରେ ପ୍ରବୃତ୍ତ ହେଲେ । ଅମିରଖାଁ ଟଙ୍କର ନବାବ ପ୍ରାପ୍ତ ହୋଇ ଦସ୍ୟୁବ୍ୟବସାୟ ତ୍ୟାଗ କଲେ । କରିମ ଆତ୍ମସମର୍ପଣ କଲେ ଏବଂ ଚିତୁ ପଳାୟନ କରି ବନ ମଧ୍ୟରେ ବ୍ୟାଘ୍ରକବଳରେ ନିହତ ହେଲେ ।

ତୃତୀୟ ବା ଶେଷ ମରହଟ୍ଟା ସମର :—ଯେଉଁ ବର୍ଷ ପିଣ୍ଡାରିମାନଙ୍କର କ୍ଷମତା ଚୂର୍ଣ୍ଣ ହେଲା ସେହି ବର୍ଷ ପେଶବା ଭୋନ୍ସଲା ଓ ହୋଲକାର ଇଂରେଜମାନଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କଲେ । ପେଶବା ବାଜିରାଓ ବେସିନ ସନ୍ଧିରେ ଅସନ୍ତୁଷ୍ଟ ହୋଇ ସ୍ୱାଧୀନତା ଲାଭ କରିବାକୁ ଚେଷ୍ଟା କରୁଥିଲେ । ଲର୍ଡ଼ ହେଷ୍ଟିଂସ୍ ୧୮୧୭ରେ ଆଉ ଗୋଟିଏ ନୂଆ ସନ୍ଧି କରିବାକୁ ବାଧ୍ୟ କରାଇ ପେଶବାଙ୍କ କ୍ଷମତା ଅଧିକ ହ୍ରାସ କରିଥିଲେ । ଏଥିରେ ରାଗାନ୍ୱିତ ହୋଇ ବାଜିରାଓ ଯୁଦ୍ଧଘୋଷଣା କଲେ । ସେ ଇଂରେଜ ରେସିଡେଣ୍ଟଙ୍କ ଭବନକୁ ଲୁଣ୍ଠନ କଲେ, କିନ୍ତୁ ପରାଜିତ ହୋଇ ଆତ୍ମସମର୍ପଣ କଲେ (୧୮୧୮) । ନାଗପୁରର ରାଜା ଅପ୍ପା-

ସାହେବ ସୀତାବଲଦିରେ ଇଂରେଜମାନଙ୍କୁ ଆକ୍ରମଣ କରି ନିଜେ ପରାସ୍ତ ହୋଇ ପଳାଇଗଲେ । ହୋଲ୍କାରଙ୍କ ସୈନ୍ୟମାନେ ମେହିଦ୍‌ପୁରରେ ସମ୍ପୂର୍ଣ୍ଣରୂପେ ପରାସ୍ତ ହେଲେ (୧୮୧୭) ।

ଏହିରୂପେ ତିନି ମାସ ମଧ୍ୟରେ ମରହଟ୍ଟାମାନଙ୍କର କ୍ଷମତା ବିଲୁପ୍ତ ହେଲା । ଇଂରେଜମାନେ ପେଶବାଙ୍କଠାରୁ ସମସ୍ତ ରାଜ୍ୟ ଛଡ଼ାଇନେଇ ଶିବାଜିବଂଶୀୟ ଜଣେ ରାଜାଙ୍କୁ ଏକ କ୍ଷୁଦ୍ର ପ୍ରଦେଶ ପ୍ରଦାନ କଲେ । ବାଜିରାଓ ଆଠଲକ୍ଷ ଟଙ୍କା ବୃତ୍ତି ନେଇ କାନପୁରର ନିକଟବର୍ତ୍ତୀ ବିଠୁରରେ ବାସ କଲେ । ଇଂରେଜମାନେ ରାଘବାଙ୍କ ଏକ ପୌତ୍ରଙ୍କୁ ନାଗପୁରର ସିଂହାସନ ଦେଲେ । ହୋଲ୍କାର ପରସ୍ପର ସାହାଯ୍ୟକୃତ ସନ୍ଧିରେ ଆବଦ୍ଧ ହୋଇ, ସୈନ୍ୟବ୍ୟୟନିର୍ବାହ ସକାଶେ ଖାନ୍ଦେଶ ପ୍ରଦେଶକୁ ଇଂରେଜମାନଙ୍କୁ ଅର୍ପଣ କଲେ ।

ୱେଲେସ୍ଲି ଯେଉଁ କାର୍ଯ୍ୟ ଆରମ୍ଭ କରିଥିଲେ ହେଷ୍ଟିଂସ୍ ସେହି କାର୍ଯ୍ୟ ସମାପନ କଲେ ଏବଂ ଇଂରେଜକମ୍ପାନୀ ଭାରତର ସର୍ବେସର୍ବା ହେଲେ । ୧୮୨୩ ରେ ହେଷ୍ଟିଂସ୍ ଭାରତ ପରିତ୍ୟାଗ କରିଥିଲେ ।

---

## ଲର୍ଡ ଆମହର୍ଷ୍ଟ—ପ୍ରଥମ ବ୍ରହ୍ମସମର ।

ଲର୍ଡ ଆମହର୍ଷ୍ଟ ୧୮୨୩ ରେ ଭାରତକୁ ଆସିଥିଲେ । ହେଷ୍ଟିଂସ୍ ବିଦାୟ ଦିନରୁ ଆମହର୍ଷ୍ଟଙ୍କ ଆସିବା ପର୍ଯ୍ୟନ୍ତ ଆଡାମ୍ ସାହେବ ଏକ୍‌ଟିଂ ଗବର୍ଣ୍ଣର ଜେନେରାଲ ହୋଇଥିଲେ ।

ପ୍ରଥମ ବ୍ରହ୍ମସମର :—୧୮ଶ ଶତାବ୍ଦୀର ମଧ୍ୟଭାଗରେ ଆଲମ୍ପୋର ନାମକ ଏକ ବ୍ୟକ୍ତି ପେଗୁରୁ ଆସି ଆଭା ନଗରରେ ଏକ ରାଜ୍ୟ ସ୍ଥାପନ କରିଥିଲେ । ସେ ସମସ୍ତ ବ୍ରହ୍ମଦେଶ ବଶୀଭୂତ କରି ସ୍ୱାଧୀନରାଜ୍ୟ ଆସାମ ଅଧିକାର କଲେ ଓ ପରେ ଇଂରେଜରାଜ୍ୟରେ ଉପଦ୍ରବ ଆରମ୍ଭ କରିବାକୁ

ଘଟିଲେ । ଇଂରେଜମାନେ ଯେତେ ପ୍ରତିବାଦ କଲେ ସେ ତାହା ଶୁଣିଲେ ନାହିଁ । ଲର୍ଡ ଆମହର୍ଷ୍ଟ ବାଧ୍ୟ ହୋଇ ଯୁଦ୍ଧ ଘୋଷଣା କଲେ । ୧୮୨୪ରୁ ୧୮୨୬ ପର୍ଯ୍ୟନ୍ତ ଏହି ସମର ଚାଲିଥିଲା । ଅବଶେଷରେ ବ୍ରହ୍ମବାସୀ ସନ୍ଧି କଲେ । ୟେଣ୍ଡାବୁ ନଗରରେ ଏକ ସନ୍ଧି ହୋଇଥିଲା । ବ୍ରହ୍ମରାଜ ଇଂରେଜମାନଙ୍କୁ ଆସାମ, ଆରାକାନ୍ ଏବଂ ଟେନାସେରିମ୍ ଏବଂ ଯୁଦ୍ଧବ୍ୟୟ ସକାଶେ ଏକକୋଟି ଟଙ୍କା ଦେଇଥିଲେ ।

ଭରତପୁର-ଅଧିକାର—୧୮୨୫ ରେ ଭରତପୁରରାଜାଙ୍କର ମୃତ୍ୟୁ ହେଲା । ତାହାଙ୍କର ଶିଶୁପୁତ୍ରଙ୍କୁ ଇଂରେଜମାନେ ରାଜା ବୋଲି ସ୍ୱୀକାର କଲେ । କିନ୍ତୁ ତାଙ୍କର ଖୁଡ଼ୁତ ଭାଇ ତାଙ୍କୁ ପଦଚ୍ୟୁତ କରି ନିଜେ ସିଂହାସନ ଅଧିକାର କଲେ । ତେଣୁ ଲର୍ଡ କମ୍ବରମିୟର ୧୮୨୬ ରେ ଭରତପୁରଦୁର୍ଗ ଅବରୋଧ କରି ଅଧିକାର କରି ନେଲେ ଏବଂ ସେହି ଶିଶୁପୁତ୍ରଙ୍କୁ ସିଂହାସନରେ ବସାଇଲେ । ଭରତପୁରର ଦୁର୍ଗ ଅଜେୟ ବୋଲି ଏଥିପୂର୍ବେ ଲୋକଙ୍କର ଯେଉଁ ଧାରଣା ଥିଲା, ତାହା ଅଧୁନା ଦୂରୀଭୂତ ହେଲା ।

ଲର୍ଡ ଆମହର୍ଷ୍ଟ ୧୮୨୮ ରେ ଭାରତ ତ୍ୟାଗ କଲେ । ଲର୍ଡ ବେଣ୍ଟିକ୍ ଭାରତକୁ ଆସିବା ପର୍ଯ୍ୟନ୍ତ ବେଲି ସାହେବ ଏକ୍ଟିଙ୍ଗ୍ ଗବର୍ଣ୍ଣରଜେନେରାଲ ହୋଇଥିଲେ ।

---

## ଲର୍ଡ ୱିଲିୟମ୍ ବେଣ୍ଟିକ୍—ତାହାଙ୍କର ସଂସ୍କାର—କମ୍ପାନିଙ୍କ ସନନ୍ଦର ନବୀକରଣ—ସର୍ ମେଟ୍‌କାଫ୍ ।

ଲର୍ଡ ୱିଲିୟମ୍ ବେଣ୍ଟିକ୍ ୧୮୨୮ ରେ ଭାରତର ଶାସନଭାର ଗ୍ରହଣ କଲେ । ଏହାଙ୍କ ଅମଳରେ ଯୁଦ୍ଧ ନ ଥିଲା । ପ୍ରଜାମାନଙ୍କର ଶ୍ରୀବୃଦ୍ଧି


ଲର୍ଡ଼ ୱିଲିୟମ୍ ବେଣ୍ଟିକ୍ ।

ନାନାପ୍ରକାର ସଦନୁଷ୍ଠାନ ହୋଇଥିଲା ।

କାଛାର, କୁର୍ଗ ଓ ମହୀସୁର ରାଜ୍ୟ :—ଏହାଙ୍କ ସମୟରେ କେବଳ ଏହି ତିନଗୋଟି ରାଜ୍ୟ ଇଂରେଜରାଜ୍ୟଭୁକ୍ତ ହୋଇ-ଥିଲା । କାଛାରରାଜ୍ୟର ଲୋକେ ନିଜ ଇଚ୍ଛାରେ ଇଂରେଜ-ମାନଙ୍କର ଶାସନାଧୀନରେ ଅଛିଥିଲେ (୧୮୩୨) । କୁର୍ଗ-ରାଜା ତାଙ୍କର ପ୍ରଜାମାନଙ୍କ ଉପରେ ଅତ୍ୟନ୍ତ ଅତ୍ୟାଚାର କରିବାରୁ ଲର୍ଡ଼ ବେଣ୍ଟିକ୍ କୁର୍ଗକୁ ଇଂରେଜରାଜ୍ୟଭୁକ୍ତ କଲେ (୧୮୩୪) । ମହୀସୁରରାଜ୍ୟ ମଧ୍ୟ ସେହି କାରଣରୁ ଇଂରେଜ ରାଜ୍ୟଭୁକ୍ତ ହୋଇଥିଲା (୧୮୩୨) ।

ସତୀଦାହ ପ୍ରଥା-ନିବାରଣ ଓ ଠଗଦମନ :—ଅନେକ କାଳରୁ ସତୀ-ଦାହପ୍ରଥା ଭାରତବର୍ଷରେ ପ୍ରଚଳିତ ଥିଲା । ଲର୍ଡ ବେଣ୍ଟିକ୍ ଏହି ପ୍ରଥା ରହିତ କରିଥିଲେ (୧୮୨୯) ।

ଠଗମାନେ ଭାରତରେ ଅତ୍ୟନ୍ତ ଅତ୍ୟାଚାର କରୁଥିଲେ । ଏମାନେ ଛୁରି ଏ ରୁମାଲ ଦ୍ୱାରା ଲୋକମାନଙ୍କର ଶ୍ୱାସରୋଧ କରି ସେମାନଙ୍କୁ ମାରିପକାଇ ସେମାନଙ୍କର ସର୍ବସ୍ୱ ନେଇଯାଉଥିଲେ । ସେମାନେ କେତେବେଳେ ଦଳବଦ୍ଧ ହୋଇ, କେତେବେଳେ ଏକାକୀ, କେତେ-

ବେଳେ ବଣିକବେଶରେ, କେତେବେଳେ ଅବା ଯାତ୍ରୀ ବେଶରେ ଭ୍ରମଣ କରୁଥିଲେ । ସେମାନେ କାଳୀକୁ ଉପାସନା କରୁଥିଲେ । କପ୍ତାନ୍ ସ୍ଲିମାନ୍ ଅନେକ କଷ୍ଟ ସହ୍ୟ କରି ଏହି ଠଗମାନଙ୍କୁ ନିର୍ମୂଳ କରିଥିଲେ ।

କନ୍ଧମାନଙ୍କର ହିନ୍ଦୁକଅଞ୍ଚଳରେ ନରବଳୀ ଦେବାପ୍ରଥା ଏହି ସମୟରେ ନିବାରିତ ହୋଇଥିଲା ।

କମ୍ପାନିଙ୍କ ସନନ୍ଦର ନବୀକରଣ—୧୮୩୩ ରେ କମ୍ପାନିଙ୍କ ସନନ୍ଦର ମିଆଦ ଶେଷ ହେବାରୁ କମ୍ପାନି ପୁଣି ୨୦ ବର୍ଷ ସକାଶେ ଭାରତବର୍ଷ ଶାସନ କରିବାର ଅନୁମତି ପାଇଥିଲେ । ଏହି ସମୟରେ ସମସ୍ତ ଭାରତ ସକାଶେ ଆଇନ ପ୍ରସ୍ତୁତ କରିବାର କ୍ଷମତା ଗବର୍ଣ୍ଣର ଜେନେରଲଙ୍କୁ ଦଅହୋଇଥିଲା । ଏହି ସନନ୍ଦରେ କମ୍ପାନୀଙ୍କର ଭାରତବର୍ଷରେ ଏକଚେଟିଆ ବାଣିଜ୍ୟ ରହିତ ହୋଇଥିଲା ।

ଶାସନ-ସଂସ୍କାର :—ବେଣ୍ଟିକ୍ ଯୁଦ୍ଧ ଓ ଶାସନ ସମ୍ବନ୍ଧୀୟ ବ୍ୟୟର ସଙ୍କୋଚ କରିଥିଲେ । ସେ ଆଇନ ସମୂହର ପରିବର୍ତ୍ତନ ଏବଂ ଉତ୍ତର-ପଶ୍ଚିମ ପ୍ରଦେଶର ରାଜସ୍ୱ ବନ୍ଦୋବସ୍ତ କରିଥିଲେ । ସେ ପାରସିଭାଷା ଛଡ଼ାଇ-ଦେଇ ଦେଶୀୟ ଭାଷା ବିଚାରବିଭାଗରେ ପ୍ରଚଳିତ କରାଇଥିଲେ ।

ଦେଶୀୟ ଲୋକେ ଉଚ୍ଚ ପଦର ଅଯୋଗ୍ୟ, ଏହି ବିଶ୍ୱାସରେ ସେମାନଙ୍କୁ ଏଥିପୂର୍ବେ ଉଚ୍ଚ କର୍ମ ଦିଆଯାଉ ନ ଥିଲା । ବେଣ୍ଟିକ୍ ଡେପୁଟିକଲେକ୍ଟର ଓ ସବ୍‌ଜଜ୍ ପଦମାନ ସୃଷ୍ଟି କରି ତହିଁରେ ଦେଶୀୟ ଲୋକଙ୍କୁ ନିଯୁକ୍ତ କଲେ । ଏହାଙ୍କ ସମୟରେ ଇଂରେଜୀଶିକ୍ଷାର ସୁବ୍ୟବସ୍ଥା ହୋଇଥିଲା ।୧୮୩୫ ଅବ୍ଦରେ ପାଶ୍ଚାତ୍ୟ ଧରଣରେ ଡାକ୍ତରୀ-ଶିକ୍ଷା ଦେବାଲାଗି କଲିକତାରେ ମେଡ଼ିକାଲ କଲେଜ ସ୍ଥାପିତ ହୋଇଥିଲା । ୧୮୩୫ ରେ ଲର୍ଡ଼ ବେଣ୍ଟିକ୍ ଭାରତ ତ୍ୟାଗ କରିଥିଲେ ।

ସର୍ ଚାର୍ଲସ୍ ମେଟ୍‌କାଫ୍—ଲର୍ଡ଼ ଅକ୍‌ଲାଣ୍ଡ ଆସିବା ପର୍ଯ୍ୟନ୍ତ ଏହି

ମହାଶୟ ଗବର୍ଣ୍ଣରଜେନେରଲ ହୋଇଥିଲେ । ଏହାଙ୍କ ସମୟରେ ମୁଦ୍ରାଯନ୍ତ୍ରକୁ ସ୍ୱାଧୀନତା ଦିଆଯାଇଥିଲା, ଅର୍ଥାତ୍ ଏଦେଶବାସୀମାନେ ନିଜ ମତାମତକୁ ନିର୍ଭୟ ଚିତ୍ତରେ ସମ୍ବାଦପତ୍ରରେ ପ୍ରକାଶ କରିବାର ଅଧିକାର ପାଇଥିଲେ ।

---

## ଲର୍ଡ ଅକଲଣ୍ଡ—ପ୍ରଥମ ଅଫଗାନସମର ।

### ଲର୍ଡ ଅକ୍‌ଲଣ୍ଡ ୧୮୩୬ ରେ ଭାରତକୁ ଆସିଥିଲେ ।

ପ୍ରଥମ ଅଫଗାନସମର ।—ଲର୍ଡ ମିଣ୍ଟୋ ଅଫଗାନରାଜ ସାହସୁଜାଙ୍କ ସଙ୍ଗେ ସଦ୍‌ଭାବ ସ୍ଥାପନ କରିଥିଲେ । ୧୮୨୬ ରେ ଦୋସ୍ତମହମ୍ମଦ ସାହସୁଜାଙ୍କୁ ତଡ଼ିଦେଇ ନିଜେ ଅମୀର ହୋଇଥିଲେ । ସାହସୁଜା ଭାରତକୁ ପଳାଇଆସି ଇଂରେଜମାନଙ୍କର ଆଶ୍ରୟ ନେଇ ଲୁଧିଆନାରେ ବାସ କରୁଥିଲେ । ଅକ୍‌ଲଣ୍ଡଙ୍କ ସମୟରେ ରୁଷୀୟମାନେ ପ୍ରବଳବେଗରେ ମଧ୍ୟଏସିଆକୁ ଅଗ୍ରସର ହେଲେ । କାଲେ ରୁଷୀୟମାନେ ଭାରତ ଆକ୍ରମଣ କରନ୍ତେ ଏହି ଭୟରେ ଅକ୍‌ଲଣ୍ଡ ଦୋସ୍ତମହମ୍ମଦଙ୍କ ସଙ୍ଗେ ସଦ୍‌ଭାବ ରଖିବାଲାଗି କାବୁଲକୁ ଦୂତ ପଠାଇଲେ । ଏହି ସମୟରେ ରୁଷୀୟ ଦୂତ କାବୁଲରେ ବାସ କରୁଥିଲେ । ଦୋସ୍ତମହମ୍ମଦ ଇଂରେଜ ଦୂତକୁ କହିଲେ ଯେ, ସେ ପେଶୱାର ପ୍ରାପ୍ତ ହେଲେ ଇଂରେଜମାନଙ୍କ ପ୍ରସ୍ତାବରେ ସମ୍ମତ ହୋଇପାରିବେ । ମାତ୍ର ପେଶୱାର ରଣଜିତସିଂହଙ୍କର ଅଧିକାରରେ ଥିବାରୁ ଅକ୍‌ଲଣ୍ଡ ଏଥିରେ ସମ୍ମତ ହେଲେ ନାହିଁ । ଇଂରେଜ ଦୂତ ଅକୃତକାର୍ଯ୍ୟ ହୋଇ ଫେରିଆସିବାରୁ ଅକ୍‌ଲଣ୍ଡ ସାହସୁଜାଙ୍କୁ କାବୁଲସିଂହାସନରେ ବସାଇବାକୁ ସଂକଳ୍ପ କଲେ । ଯୁଦ୍ଧଘୋଷଣା ହେଲା (୧୮୩୮) । ଦୋସ୍ତମହମ୍ମଦ ପରାଜିତ ହୋଇ କଲି-

କଡାରେ ବନ୍ଦଭାବରେ ବାସ କଲେ । ସାହସୁଜା ଅଫଗାନସିଂହାସନ ଅଧିରୋହଣ କଲେ । ଏକଦଳ ଇଂରେଜ ସୈନ୍ୟ ଶାନ୍ତିସ୍ଥାପନ କରିବା-ଲାଗି କାବୁଲରେ ରହିଲେ ।

ଅଫଗାନ ବାସିମାନେ ଏଥିରେ ଅସନ୍ତୁଷ୍ଟ ହୋଇ ୧୮୪୧ ରେ ବିଦ୍ରୋହୀ ହେଲେ । ସେମାନେ କାବୁଲର ଇଂରେଜପ୍ରତିନିଧିଙ୍କୁ ହତ୍ୟା କଲେ । ଦୋସ୍ତମହମ୍ମଦଙ୍କ ପୁତ୍ର ଅକବରଖାଁ ବିଦ୍ରୋହୀମାନଙ୍କର ନେତା ହେଲେ । ଇଂରେଜ ସେନାପତି ଅକବରଖାଁଙ୍କ ସଙ୍ଗେ ସନ୍ଧିସ୍ଥାପନ କରି ଭାରତକୁ ଫେରିଆସିଲେ । ମାତ୍ର ଖାଇବର ପଥରେ ୪ ସହସ୍ର ସୈନ୍ୟ ଏବଂ ୧୨ ସହସ୍ର ଅନ୍ୟାନ୍ୟ ଲୋକ କେହି ଶୀତରେ ବା କେହି ଅଫଗାନ-ମାନଙ୍କ ଅସ୍ତ୍ରାଘାତରେ ନିହତ ହୋଇଥିଲେ । କେବଳ ଡାକ୍ତର ବ୍ରାଇଡନ ଭାରତବର୍ଷରେ ଏହି ଦାରୁଣ ସମ୍ବାଦ ଦେବାଲାଗି ଜେଲାଲବାଦରେ ପହୁଞ୍ଚିଥିଲେ । ତଦନନ୍ତର ଲର୍ଡ ଅକ୍‌ଲଣ୍ଡ ବିଲାତକୁ ଫେରିଯାଇଥିଲେ ।

---

## ଲର୍ଡ ଏଲେନ୍‌ବରୋ—ସିନ୍ଧୁସମର ।

ଲର୍ଡ ଏଲେନ୍‌ବରୋ ୧୮୪୨ ରେ ଭାରତରେ ଉପସ୍ଥିତ ହୋଇ ଏକଦଳ ସୈନ୍ୟ ଅଫଗାନସ୍ଥାନକୁ ପଠାଇଲେ । କାବୁଲ ଅଧିକୃତ ହେଲା, ଏବଂ ଇଂରେଜବନ୍ଦୀମାନେ ମୁକ୍ତି ଲଭିଲେ । ତତ୍ପରେ ଇଂରେଜସୈନ୍ୟମାନେ ଅଫଗାନିସ୍ଥାନରୁ ଫେରି ଆସିଲେ । ସାହସୁଜା ଇତିପୂର୍ବେ ବିଦ୍ରୋହୀମାନଙ୍କ ଦ୍ୱାରା ନିହତ ହୋଇଥିବାରୁ ଦୋସ୍ତ-ମହମ୍ମଦ ଅମୀର ହେଲେ ।

ସିନ୍ଧୁସମର ।—ସିନ୍ଧୁପ୍ରଦେଶର ଅମୀରମାନେ ଇଂରେଜଙ୍କର ଶତ୍ରୁ-ମାନଙ୍କ ସହିତ ଯୋଗ ଦେଇଥିବା ଦୋଷରୁ ଏଲେନ୍‌ବରୋ ସେମାନଙ୍କ ବିରୁଦ୍ଧେ ଯୁଦ୍ଧଘୋଷଣା କଲେ । ସେମାନେ ୧୮୪୩ ରେ ସର୍ ଚାର୍ଲସ୍ ନେପିୟରଙ୍କ ଦ୍ୱାରା ମିଅନି ଓ ହାଇଦ୍ରାବାଦରେ ପରାଜିତ ହୋଇଥିଲେ ।

(୧୮୪୩) । ଫଳସ୍ୱରୂପ ସିନ୍ଧୁପ୍ରଦେଶ ବମ୍ବେର ପ୍ରେସିଡେନ୍ସି ସହିତ ମିଳିତ ହେଲା ।

ଗୋଆଲିଅର-ଯୁଦ୍ଧ ।—ସିନ୍ଧିଆରାଜ୍ୟରେ ଗୃହବିବାଦ ଲାଗିବା'ରୁ ଇଂରେଜମାନେ ଏକ ପକ୍ଷ ଅବଲମ୍ବନ କରି ଅନ୍ୟ ପକ୍ଷକୁ ମହାରାଜପୁର ଓ ପୁନିଆରଠାରେ ପରାସ୍ତ କରିଥିଲେ । ଫଳସ୍ୱରୂପ ସିନ୍ଧିଆରାଜ୍ୟ ଇଂରେଜମାନଙ୍କର କରଦ ହେଲା ।

---

### ୧ମ ଲର୍ଡ ହାର୍ଡିଞ୍ଜ—ପ୍ରଥମ ଶିଖସମର ।

ଲର୍ଡ ହାର୍ଡିଞ୍ଜ ୧୮୪୪ ରେ ଭାରତର ଶାସନଭାର ଗ୍ରହଣ କଲେ । ଏ ଜଣେ ବହୁଦର୍ଶୀ ସୈନିକ ପୁରୁଷ ଥିଲେ । ଫରାସିମାନଙ୍କ ସହ ଯୁଦ୍ଧ କରିବାରେ ଏହାଙ୍କର ଗୋଟିଏ ହାତ କଟିହୋଇ ଯାଇଥିଲା । ସେହି ହେତୁରୁ ଭାରତବାସିମାନେ ଏହାଙ୍କୁ ହାତକଟା ଲାଟ୍ କହୁଥିଲେ ।

ଶିଖଜାତି ।—ବାବା ନାନକ ଶିଖ ଧର୍ମର ପ୍ରତିଷ୍ଠାତା ଅଟନ୍ତି । ୧୪୬୯ରେ ଲାହୋରନିକଟବର୍ତ୍ତୀ ନାନା-କ୍ଲୁଗ୍ ଗ୍ରାମରେ ସେ ଜନ୍ମ ଗ୍ରହଣ କରିଥିଲେ । ସେ ଜାତିରେ କ୍ଷତ୍ରିୟ ଥିଲେ । ହିନ୍ଦୁ ଓ ମୁସଲମାନମାନଙ୍କର ଅନେକ ଧର୍ମଶାସ୍ତ୍ର ପାଠ କରି ଓ ଭାରତବର୍ଷ ଏବଂ ଆରବର ଅନେକ ତୀର୍ଥ ବୁଲି ଅବଶେଷରେ ସେ ଏକ ନୂତନ ଧର୍ମ ପ୍ରଚାର କରିଥିଲେ । ଏହି ଧର୍ମକୁ ଶିଖଧର୍ମ କହନ୍ତି । ଅନେକ ହିନ୍ଦୁ ଓ ମୁସଲମାନ ଏହି ଧର୍ମ ଗ୍ରହଣ କରିଥିଲେ ।



ଲର୍ଡ ହାର୍ଡିଞ୍ଜ ।

ଶିଖମାନେ ଏକେଶ୍ୱରବାଦୀ ଅଟନ୍ତି ସେମାନେ ଏକ ବୃହତ୍ ସମ୍ପ୍ରଦାୟରେ ପରିଣତ ହୋଇଥିଲେ । ଅରଙ୍ଗଜେବ ଓ ତାହାଙ୍କ ଉତ୍ତରାଧିକାରୀମାନଙ୍କର ଅତ୍ୟାଚାରରେ ପ୍ରପୀଡ଼ିତ ହୋଇ ଶିଖମାନେ ଧର୍ମଶିକ୍ଷା ସଙ୍ଗେ ସଙ୍ଗେ ଅସ୍ତ୍ର ଶିକ୍ଷା ଆରମ୍ଭ କରିଥିଲେ । କ୍ରମେ ସେମାନେ ଅସ୍ତ୍ରବିଦ୍ୟାରେ ଦକ୍ଷ ହୋଇଉଠିଥିଲେ ।

ରଣଜିତ୍‌ସିଂହ—ରଣଜିତ୍‌ସିଂହ ଶିଖମାନଙ୍କୁ ଜାତୀୟ ଜୀବନ ପ୍ରଦାନ କରିଥିଲେ । ଏହାଙ୍କ ପୂର୍ବେ ଶିଖମାନେ ଏକ ଏକ ଜଣ ସର୍ଦ୍ଦାରଙ୍କ ଅଧୀନରେ ଥିଲେ । ୧୭୮୦ ରେ ରଣଜିତ୍‌ସିଂହ ଜନ୍ମ ଗ୍ରହଣ କରିଥିଲେ । ବାଲ୍ୟକାଳରେ ବସନ୍ତରୋଗରେ ତାହାଙ୍କର ବାମ ଚକ୍ଷୁ ନଷ୍ଟ ହୋଇଥିଲା । ରଣଜିତ୍‌ସିଂହ ବିଦ୍ୟା ଶିକ୍ଷା କରି ନ ଥିଲେ । ୨୦ ବର୍ଷ ବୟସରେ ସେ କାବୁଲପତିଙ୍କ ଦ୍ୱାରା ଲାହୋରର ଶାସନକର୍ତ୍ତା ନିଯୁକ୍ତ ହୋଇଥିଲେ । ତତ୍ପରେ ସେ ନିଜ ବାହୁବଳରେ ମୁଲ୍‌ତାନଠାରୁ କାଶ୍ମୀରର ଉତ୍ତର ପର୍ଯ୍ୟନ୍ତ ଏବଂ ଶତଦ୍ରୁଠାରୁ ପେଶବାର ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । ଲର୍ଡ଼ମିଣ୍ଟୋ ଏହାଙ୍କ ସଙ୍ଗେ ସନ୍ଧି ସ୍ଥାପନ କରିଥିଲେ । ରଣଜିତ୍ ରାଜନୀତିକୁଶଳ, ବୁଦ୍ଧିମାନ୍ ଓ ରଣପଣ୍ଡିତ ଥିଲେ । ୧୮୩୯ରେ ଇହଲୋକ ପ୍ରାଣତ୍ୟାଗ କଲେ ।

ପ୍ରଥମ ଶିଖସମର ।—ରଣଜିତ୍‌ସିଂହଙ୍କ ମୃତ୍ୟୁପରେ ଶିଖସୈନ୍ୟମାନେ ଦୁର୍ଦ୍ଦାନ୍ତ ହୋଇ ଉଠିଲେ । ନାବାଳକ ରାଜା ଦୁଲିପସିଂହ ଏମାନଙ୍କୁ ନିଜ କବଳରେ ରଖିପାରି ନ ଥିଲେ । ଶିଖସୈନ୍ୟମାନେ ୧୮୪୫ରେ ଶତଲେଜ ନଦୀ ପାରହୋଇ ଇଂରେଜରାଜ୍ୟ ଆକ୍ରମଣ କଲେ । ସର୍ ହ୍ୟୁଗ୍‌ଗଫ୍ ଇଂରେଜସୈନ୍ୟମାନଙ୍କର ନେତା ହୋଇ ଅଳ୍ପଦିନମଧ୍ୟରେ ମୁଦକି, ଫିରୋଜ୍‌ସାହ, ଅଲିବାଲ୍ ଏବଂ ସୋବ୍ରାଓଁରେ ୪ ଗୋଟି ଭିନ୍ନ ଭିନ୍ନ ଯୁଦ୍ଧ କରିଥିଲେ । ପ୍ରତ୍ୟେକ ଯୁଦ୍ଧରେ ଉଭୟପକ୍ଷର ଅନେକ ସୈନ୍ୟ ନଷ୍ଟ ହେଉଥିଲେ ସତ୍ୟ, କିନ୍ତୁ ଇଂରେଜମାନେ ଜିତୁଥିଲେ ।

ଅବଶେଷରେ ସନ୍ଧି ହେଲା (୧୮୪୬) । ଦୁଲୀପସିଂହ ରାଜା ବୋଲି ସ୍ୱୀକୃତ ହେଲେ । ଶିଖସୈନ୍ୟ ସଂଖ୍ୟା କମାଇ-ଦିଆଗଲା ଆଉ ବେୟାଜ ଓ ଶତଲେଜର ମଧ୍ୟବର୍ତ୍ତୀ ସ୍ଥାନ କମ୍ପାନୀ ପାଇଲେ । ଇଂରେଜମାନେ ଯୁଦ୍ଧବ୍ୟୟ ସକାଶେ ୧½ କୋଟି ଟଙ୍କା ଦାବି କରିଥିଲେ । କିନ୍ତୁ ଦୁଲୀପସିଂହଙ୍କ ପାଖରେ ଏତେ ଟଙ୍କା ନ ଥିଲା । ସେ ସେଥି-ଲାଗି କମ୍ପାନୀକୁ କାଶ୍ମୀର ଦେଲେ । ହାର୍ଡିଞ୍ଜ କାଶ୍ମୀରର



ରଣଜିତ ସିଂହ ।

ଶାସନକର୍ତ୍ତା ଗୋଲାବସିଂହଙ୍କଠାରୁ ୧ କୋଟି ଟଙ୍କା ନେଇ ଏହି ଦେଶ ତାଙ୍କୁ ବିକ୍ରୟ କରିଦେଇଥିଲେ ସେହି ସମୟଠାରୁ କାଶ୍ମୀର ଗୋଟିଏ ସ୍ୱତନ୍ତ୍ର ରାଜ୍ୟ ହୋଇ ରହିଅଛି । ଲାହୋରରେ ଏକଦଳ ଇଂରେଜ ସୈନ୍ୟ ରଖାଯାଇଥିଲେ ।

ହାର୍ଡିଞ୍ଜଙ୍କ ଅମଳରେ ଭାରତରେ ରେଲୱେ ଓ ଟେଲିଗ୍ରାଫ୍ ବସି-ଥିଲା ଏବଂ ଇଂରେଜୀ ଶିକ୍ଷା ଦେବାର ପ୍ରସ୍ତାବ ହୋଇଥିଲା । ଦେଶୀୟ-ରାଜାମାନଙ୍କ ରାଜ୍ୟରେ ସତୀଦାହପ୍ରଥା ରହିତ କରି ଏବଂ ଦେଶୀୟ ଲୋକମାନଙ୍କୁ ରାଜକାର୍ଯ୍ୟରେ ନିଯୋଗ ପ୍ରଭୃତି ଅନେକ ହିତକର କାର୍ଯ୍ୟ କରି ହାର୍ଡିଞ୍ଜ ଏ ଦେଶର ଭକ୍ତିଭାଜନ ହୋଇଥିଲେ ।

## ଲର୍ଡ଼ ଡେଲ୍‌ହାଉସି—ଦ୍ୱିତୀୟ ଶିଖସମର—ଦ୍ୱିତୀୟ ବ୍ରହ୍ମସମର—ସାମ୍ରାଜ୍ୟଲୁକ୍ତୀକରଣ ନୀତି ।

୧୮୪୮ ରେ ହାର୍ଡିଞ୍ଜ ଭାରତପରିତ୍ୟାଗ କରିବାରୁ ଲର୍ଡ଼ ଡେଲ୍‌ହାଉସି ଗବର୍ଣ୍ଣରଜେନେରାଲ ହୋଇ ଆସିଲେ । ସେ ଶାସନଭାର ଗ୍ରହଣ କରିବାର ପ୍ରାୟ ଛମାସମଧ୍ୟରେ ଶିଖମାନଙ୍କସହ ଯୁଦ୍ଧ ହେଲା ।



ଲର୍ଡ ଡେଲହାଉସି ।

ଦ୍ୱିତୀୟ ଶିଖସମର ।—ଶିଖମାନେ ମନେ ମନେ ଇଂରେଜମାନଙ୍କ ପ୍ରତି ଅସନ୍ତୁଷ୍ଟ ଥିଲେ । ଶିଖରାଜମାତା ଇଂରେଜଙ୍କ ବିରୁଦ୍ଧେ ଷଡ଼ଯନ୍ତ୍ର କରୁଥିଲେ । ମୁଲତାନର ମୂଲରାଜ ବିଦ୍ରୋହୀ ହୋଇ ଦୁଇଜଣ ଇଂରେଜ କର୍ମଚାରୀଙ୍କୁ ହତ୍ୟା କରାଇଲେ । କର୍ମଚ୍ୟୁତ ଶିଖସୈନ୍ୟମାନେ ଏହି ବିଦ୍ରୋହରେ ଯୋଗ ଦେଲେ । ଯେତେବେଳେ ଇଂରେଜସୈନ୍ୟ ମୁଲତାନ ଅବରୋଧ କରୁଥିଲେ ସେହି ସମୟରେ ଶିଖରାଜମାତା ଶିଖସେନାପତି ସେରସିଂହଙ୍କୁ ବିଦ୍ରୋହୀମାନଙ୍କ ସଙ୍ଗ ଯୋଗ ଦେବା ପାଇଁ ପଠାଇଲେ । ଚିଲିଆନୱାଲାଠାରେ ଶିଖସୈନ୍ୟ ଓ ଇଂରେଜସେନାପତି ଗଫ୍ ସାହେବଙ୍କ ମଧ୍ୟରେ ଗୋଟିଏ ଭୟାନକ ଯୁଦ୍ଧ ହୋଇଥିଲା । କେହି ପରାଜିତ ହୋଇ ନ ଥିଲେ ।

ଏହି ଯୁଦ୍ଧରେ ଇଂରେଜମାନଙ୍କର ବିଶେଷ କ୍ଷତି ହୋଇଥିଲା (୧୮୪୯) ଗୁଜରାଟରେ ଆଉ ଗୋଟିଏ ଯୁଦ୍ଧ ହେଲା । ଏହି ଯୁଦ୍ଧରେ ଲର୍ଡ଼ ଗଫ୍ ଶିଖସୈନ୍ୟମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରି ଧ୍ୱଂସ କଲେ ଫଳସ୍ୱରୂପେ ୧୮୪୯ ମାର୍ଚ୍ଚ ୨୯ ତାରିଖରେ ଲର୍ଡ ଡେଲ୍‌ହାଉସି ପଞ୍ଜାବ ପ୍ରଦେଶକୁ ଇଂରେଜରାଜ୍ୟଭୁକ୍ତ କଲେ । ମହାରାଜ ଦୁଲିପସିଂହଙ୍କୁ ବାର୍ଷିକ ପାଞ୍ଚଲକ୍ଷ ଟଙ୍କା ପେନ୍‌ସନ୍ ଦିଆଯାଇ ବିଲାତକୁ ନିଆଗଲା । ଶିଖସୈନ୍ୟମାନଙ୍କଠାରୁ ଅସ୍ତ୍ରଶସ୍ତ୍ର କାଢ଼ିନିଆଗଲା ।

ଦ୍ୱିତୀୟ ବ୍ରହ୍ମସମର :—ରେଙ୍ଗୁନରେ ଇଂରେଜ ବଣିକ୍‌ମାନଙ୍କ ଉପରେ ବ୍ରହ୍ମବାସୀମାନେ ଅତ୍ୟାଚାର କରିବାରୁ ଦ୍ୱିତୀୟ ବ୍ରହ୍ମଯୁଦ୍ଧ ହୋଇଥିଲା । ଅଳ୍ପକାଳ ଯୁଦ୍ଧପରେ ଇଂରେଜମାନେ ଜୟୀ ହୋଇ ପେଗୁପ୍ରଦେଶ ପାଇଥିଲେ (୧୮୫୨) ।

ଅନ୍ୟାନ୍ୟ ପ୍ରଦେଶାଧିକାର :—୧୮୪୮ ରେ ସେତାରାର ରାଜାଙ୍କ ମୃତ୍ୟୁ ହେଲା । ସେ ଗୋଟିଏ ଦତ୍ତକ ପୁତ୍ର ଗ୍ରହଣ କରିଥିଲେ । ଡେଲ୍‌ହାଉସି ଏହା ଅନୁମୋଦନ ନ କରି ୧୮୪୯ ରେ ସେତାରାକୁ ଇଂରେଜରାଜ୍ୟଭୁକ୍ତ କଲେ । ଏହି କାରଣରୁ ମଧ୍ୟ ଝାନ୍‌ସି ଓ ନାଗପୁର ରାଜ୍ୟଦ୍ୱୟ ଇଂରେଜରାଜ୍ୟଭୁକ୍ତ ହୋଇଥିଲା (୧୮୫୩) । ୧୮୫୫ ରେ ଅର୍କଟର ନବାବ ଓ ତାଞ୍ଜୋରର ରାଜା ନିଃସନ୍ତାନ ହୋଇ ମୃତ ହେବାରୁ ସେମାନଙ୍କ ରାଜ୍ୟ ଇଂରେଜରାଜ୍ୟସାମିଲ ହୋଇଥିଲା । ନିଜାମ ନିଜ ରାଜ୍ୟରେ ଇଂରେଜସୈନ୍ୟ ରଖି ସେମାନଙ୍କ ବ୍ୟୟ ସକାଶେ କମ୍ପାନୀଙ୍କୁ ବାର୍ଷିକ କେତେକ ଟଙ୍କା ଦେଉଥିଲେ । କିନ୍ତୁ ସେ ନିୟମିତରୂପେ ଟଙ୍କା ଦାଖଲ କରି ନ ପାରିବାରୁ ବେରାର ପ୍ରଦେଶ ନିଜାମଙ୍କଠାରୁ ନିଆଯାଇଥିଲା (୧୮୫୩) । ଅଯୋଧ୍ୟାର ନବାବ ସ୍ୱରାଜ୍ୟ ଉତ୍ତମରୂପେ ଶାସନ କରି ନ ପାରିବାରୁ ଡେଲ୍‌ହାଉସି ଅଯୋଧ୍ୟା ପ୍ରଦେଶ କମ୍ପାନୀରାଜ୍ୟ-

ଭୁକ୍ତ କଲେ (୧୮୫୬) । ଅଯୋଧ୍ୟାର ନବାବ ବାର୍ଷିକ ତେରଲକ୍ଷ ଟଙ୍କା ବୃତ୍ତି ନେଇ କଲିକତାରେ ବାସ କଲେ । ୧୮୫୧ ରେ ପେନ୍‌ସନ୍‌ପ୍ରାପ୍ତ ବାଜିରାଓଙ୍କ ମୃତ୍ୟୁ ହେବାରୁ ଡେଲ୍‌ହାଉସି ତାଙ୍କ ଦତ୍ତକ ପୁତ୍ର ନାନାସାହେବଙ୍କୁ ଆଉ ବୃତ୍ତି ଦେଲେ ନାହିଁ । ଓଡ଼ିଶାର ଅନଗୁଳ ଏହାଙ୍କ ଅମଳରେ ଖାସ୍ ହୋଇଥିଲା ।

କମ୍ପାନିଙ୍କ ସନନ୍ଦର ନବୀକରଣ ।—୧୮୫୩ ରେ କମ୍ପାନିଙ୍କ ସନନ୍ଦର ମିଆଦ ଶେଷ ହେବାରୁ ପୁନର୍ବାର ନୂଆ ସନନ୍ଦ ଦିଆଯାଇଥିଲା । ଏଥର ପୂର୍ବପରି ନିର୍ଦ୍ଦିଷ୍ଟ ସମୟଲାଗି ସନନ୍ଦ ଦିଆଯାଇ ନ ଥିଲା । ପାର୍ଲିମେଣ୍ଟ ଯେତେବେଳେ ଇଚ୍ଛା ସେତେବେଳେ ସନନ୍ଦ ରହିତ କରିପାରିବାର ଅଧିକାର ପାଇଥିଲେ । ଏହି ନୂଆ ବନ୍ଦୋବସ୍ତର ଫଳସ୍ୱରୂପ ବଙ୍ଗଳାରେ ଜଣେ ଲେଫ୍‌ଟେନାଣ୍ଟ ଗବର୍ଣ୍ଣର ନିଯୁକ୍ତ ହୋଇଥିଲେ ।

ଲର୍ଡ଼ ଡେଲ୍‌ହାଉସି ୧୮୫୬ ରେ ବିଲାତ ଯାତ୍ରା କଲେ ।

ଲର୍ଡ଼ ଡେଲ୍‌ହାଉସିଙ୍କ ସମୟରେ ଦେଶର ବୈଷୟିକ ଉନ୍ନତି—ରେଲୱେ ଏବଂ ତାରଡାକ ।

ଭାରତବର୍ଷକୁ ଯେତେ ଶାସନକର୍ତ୍ତା ଆସିଥିଲେ ସେମାନଙ୍କ ମଧ୍ୟରେ ଡେଲ୍‌ହାଉସି ଜଣେ ପ୍ରଧାନ ଶାସନକର୍ତ୍ତା । ଲର୍ଡ଼ ବେଣ୍ଟିକ୍‌ଙ୍କ ପରି ଏହି ଲାଟ ମଧ୍ୟ ଦେଶର ବୈଷୟିକ ଓ ନୈତିକ ଉନ୍ନତି ବିଷୟରେ ମନୋଯୋଗ ଦେଇଥିଲେ; ଏବଂ ତହିଁରେ କୃତକାର୍ଯ୍ୟ ମଧ୍ୟ ହୋଇଥିଲେ । ସେ ପ୍ରତ୍ୟେକ ବିଭାଗର କିଛି କିଛି ସଂସ୍କାର କରିଥିଲେ । ତାହାଙ୍କ ଉଦ୍ୟମରେ ଏ ଦେଶରେ ରେଲୱେ ବିସ୍ତାରିତ ହୋଇଥିଲା; ଏବଂ ତାରଡାକ ମଧ୍ୟ ବସିଥିଲା । ତାହାଙ୍କ ଅମଳରେ ଦୁଇ ପଇସା ମାସୁଲରେ ଭାରତବର୍ଷରେ ସବୁ ସ୍ଥାନକୁ ଚିଠି ପଠାଇବାର ସୁବିଧା

କରାଯାଇଥିଲା । ସେ ପୂର୍ତ୍ତବିଭାଗ ସ୍ଥାପନ କରିଥିଲେ ; ଏହି ବିଭାଗର କାର୍ଯ୍ୟାବଳୀଦ୍ୱାରା କୃଷି ଓ ବାଣିଜ୍ୟର ଶ୍ରୀବୃଦ୍ଧି ସାଧିତ ହୋଇଥିଲା ଓ ଗମନାଗମନର ବିଶେଷ ସୁବିଧା ହୋଇଥିଲା ; ବଡ଼ ବଡ଼ ରାସ୍ତାମାନ ପ୍ରସ୍ତୁତ ହୋଇଥିଲା, ଏବଂ ବଡ଼ ବଡ଼ କେନାଲ ବା ଖାଲମାନ କୃଷିର ଉପକାରାର୍ଥ ଖୋଲାଯାଇଥିଲା । ଗାଙ୍ଗେୟନାଲ ଏହି ଲାଟଙ୍କର କୀର୍ତ୍ତି ଅଟେ । ଏହି ଲାଟମହୋଦୟ ଭାରତବାସୀମାନଙ୍କର ମାନସିକ ଓ ନୈତିକ ଉନ୍ନତି ବିଷୟରେ ବିଶେଷ ଯତ୍ନଶୀଳ ଥିଲେ । ଭାରତବାସୀଙ୍କ ମଧ୍ୟରେ ଶିକ୍ଷାର ବିସ୍ତାରନିମିତ୍ତ ସେ ବିଶେଷ ଚେଷ୍ଟା କରିଥିଲେ । ଏହାଙ୍କ ସଭ୍ୟର ଅନ୍ୟତମ ବେଥୁନ୍‌ସାହେବ ସ୍ତ୍ରୀଶିକ୍ଷାର ଉନ୍ନତି ନିମନ୍ତେ କଲିକତାରେ ଗୋଟିଏ ବାଳିକାବିଦ୍ୟାଳୟ ସ୍ଥାପନ କରାଇଥିଲେ । ବର୍ତ୍ତମାନ ସୁଦ୍ଧା ଏହି ବିଦ୍ୟାଳୟ ବେଥୁନ୍‌କଲେଜ ନାମରେ ପରିଚିତ । ୧୮୫୪ ରେ ଏହି ମହାତ୍ମାଙ୍କ ଉଦ୍ୟମରେ କଲିକତା, ମାନ୍ଦ୍ରାଜ ଓ ବମ୍ବେର ପ୍ରେସିଡେନ୍ସିରେ ଏକ ଏକ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । କଲିକତାର ପ୍ରେସିଡେନ୍ସି କଲେଜ ମଧ୍ୟ ଏହାଙ୍କର କୀର୍ତ୍ତି ଅଟେ । ବେସରକାରୀ ସ୍କୁଲମାନଙ୍କୁ ସାହାଯ୍ୟ ଦେବା ପ୍ରଥା ଏହାଙ୍କ ସମୟରେ ପ୍ରଚଳିତ ହୋଇଥିଲା । ଏହିସବୁ ଦେଶହିତକର କାର୍ଯ୍ୟ କରିଥିବାରୁ ଡେଲ୍‌ହାଉସିଙ୍କ ନାମ ପ୍ରତ୍ୟେକ ଭାରତବାସୀଙ୍କ ହୃଦୟରେ ଆଜି ସୁଦ୍ଧା ଅଙ୍କିତ ହୋଇ ରହିଅଛି ।

---

## ଭାରତ ସାମ୍ରାଜ୍ୟ ।

### ଲର୍ଡ କାନିଂ—ସିପାହି-ବିଦ୍ରୋହ ଓ ମହାରାଣୀଙ୍କ ଘୋଷଣାପତ୍ର ।

ଲର୍ଡ କାନିଂ ୧୮୫୬ ରେ ଗବର୍ଣ୍ଣରଜେନେରାଲ ହୋଇ ଭାରତକୁ ଆସିଥିଲେ । କାନିଂ କଲିକତାକୁ ଆସିବା ସମୟରେ କହିଥିଲେ "ମୁଁ ଭାରତବର୍ଷରେ ଶାନ୍ତିର ଆଶା କରେ, ମାତ୍ର ଏହାର ନିର୍ମଳ ଆକାଶରେ



ଲର୍ଡ କାନିଂ ।

ମନୁଷ୍ୟ-ମୁଷ୍ଟି-ପରିମିତ ଖଣ୍ଡିଏ ମେଘ ଉଦିତ ହୋଇଅଛି ଏବଂ ସେହି ମେଘ କ୍ରମେ ବୃଦ୍ଧି ପାଇ ଆମ୍ଭମାନଙ୍କର ସର୍ବନାଶ କରି-ପାରେ ।" ତାହାଙ୍କର ଏହି ଭବିଷ୍ୟତ୍ ବାଣୀ ସଫଳ ହୋଇ-ଥିଲା । ଏକବର୍ଷ ନ ଯାଉଣୁ ଏପରି ଗୋଟିଏ ଦୁର୍ଘଟଣା ଆସି ଉପସ୍ଥିତ ହେଲା ଯେ ତାହା ଭାରତରେ ଇଂରେଜ ରାଜ୍ୟକୁ ଟଳମଳ କରିଦେଇଥିଲା ।

ସିପାହିବିଦ୍ରୋହର କାରଣ:—ବୋମ୍ବାଇର ସିପାହି-ମାନେ ପୃଥିବୀର ଯେକୌଣସି ସ୍ଥାନକୁ ଯିବାଲାଗି ସ୍ୱୀକୃତ ଥିଲେ ଏବଂ ସେମାନେ ରେଜିମେଣ୍ଟରେ ଉତ୍ତମ-ର କାର୍ଯ୍ୟ କରୁଥିଲେ । ବଙ୍ଗପ୍ରଦେଶର ସିପାହିମାନେ ଭାରତବର୍ଷର ବାହାରକୁ ଯିବାଲାଗି ଇଚ୍ଛୁକ ନ ଥିଲେ, ଏବଂ ସେମାନେ ନିଜକୁ ଉଚ୍ଚବଂଶଜାତ ବୋଲି ମନେକରି ଭୃତ୍ୟର କାର୍ଯ୍ୟ କରୁ ନ ଥିଲେ । ଦ୍ୱିତୀୟ ବ୍ରହ୍ମଯୁଦ୍ଧରେ ବଙ୍ଗଦେଶର ଏକଦଳ ସିପାହି ବ୍ରହ୍ମ-ଦେଶକୁ ଯିବାଲାଗି ଅସ୍ୱୀକାର କଲେ । ୧୮୫୬ ରେ ସରକାର୍-ବାହାଦୁର ଏକ ଆଇନ ଜାରି କଲେ । ତଦନୁସାରେ ଯେଉଁ ଲୋକ ଯେକୌଣସି ସ୍ଥାନକୁ ଯିବା ଲାଗି ଅସ୍ୱୀକାର କରିବ ସେ ସିପାହି ହୋଇ ପାରିବ ନାହିଁ । ଏଥିରେ ଲୋକମାନଙ୍କର ଏହି ଧାରଣା ହେଲା, ଯେ ଇଂରେଜମାନେ ଅଉ ଦେଶୀୟ ଲୋକମାନଙ୍କର ଜାତିୟ ଗୌରବ

ରଖିଦେବେ ନାହିଁ । ଯେତେବେଳେ ଏଦେଶରେ ରେଲୱେ ଓ ତାର-ଡାକ ବିସ୍ତୃତ ହେଲା ଏବଂ ଶିକ୍ଷାବିସ୍ତାରଲାଗି ବିଦ୍ୟାଳୟମାନ ବସିଲା, ସେତେବେଳେ ଲୋକେ ମନେ ଭାବିଲେ, ବୋଧ ହୁଏ କମ୍ପାନି ଭାରତବର୍ଷକୁ ବିଲାତ କରିପକାଇବେ । ଲକ୍ଷ ଲକ୍ଷ ଲୋକଙ୍କ ମନରେ ଏହି ଧାରଣା ହେଲା ଯେ ଇଂରେଜମାନେ ଏଦେଶୀୟମାନଙ୍କୁ ଖ୍ରୀଷ୍ଟିୟାନ କରିଦେବେ । ରାଜ୍ୟଭ୍ରଷ୍ଟ ଓ ବୃତ୍ତିଚ୍ୟୁତ ରାଜବଂଶୀୟମାନେ ଲୋକମାନଙ୍କୁ ଉତ୍ତେଜିତ କରିବାକୁ ଲାଗିଲେ । ସେମାନେ ବହୁଲୋକ ନିଯୁକ୍ତ କରି ଇଂରେଜପକ୍ଷୀୟ ସିପାହିମାନଙ୍କୁ ଇଂରେଜମାନଙ୍କ ବିରୁଦ୍ଧେ ନାନା କଥା ଶୁଣାଇଲେ । ଏଥିରେ ଇଂରେଜଶାସନ ଉପରେ ସିପାହିମାନଙ୍କର ବିରାଗ କ୍ରମଶଃ ବୃଦ୍ଧି ପାଇଲା । ୧୮୫୭ । ୫୮ ରେ ଯେତେବେଳେ ଜ୍ୟୋତିଷମାନେ ବର୍ଷର ଆରମ୍ଭରେ ନୂଆ ପାଞ୍ଜି ଶୁଣାନ୍ତି ସେତେବେଳେ ବର୍ଷର ଫଳାଫଳ ମଧ୍ୟରେ ଏହା ମଧ୍ୟ କହିବାକୁ ଲାଗିଲେ ଯେ, ପଲାସିଯୁଦ୍ଧ ଉତ୍ତାରୁ ଶହେବର୍ଷ ହେଲାଣି, କମ୍ପାନିର ରାଜ୍ୟ ଆଉ ରହିବ ନାହିଁ । କେତେକ ଲୋକ ଏହା ଶୁଣି ବିଶ୍ୱାସ କଲେ । ୧୮୫୭ ରେ ରାଇଫଲ୍ ନାମକ ଏକପ୍ରକାର ବନ୍ଧୁକ ସିପାହିମାନଙ୍କର ବ୍ୟବହାର ସକାଶେ ବିଲାତରୁ ଅଣାହୋଇଥିଲା । ତାହାର ଟୋଟାକୁ ଦାନ୍ତରେ କାଟିବାକୁ ପଡୁଥିଲା । ଲୋକେ କହିଲେ ଯେ ଟୋଟାରେ ଗୋରୁ ଓ ଘୁଷୁରିର ଚର୍ବି ବୋଳାହୋଇଥାଏ, ଏଣୁ ତାହା ହିନ୍ଦୁ ଓ ମୁସଲମାନମାନଙ୍କର ଅସ୍ପୃଶ୍ୟ । ହିନ୍ଦୁ ଓ ମୁସଲମାନ ଉଭୟଙ୍କର ଜାତି ଓ ଧର୍ମ ନାଶକରିବାଲାଗି ଟୋଟା ବ୍ୟବହୃତ ହେଉଅଛି । ଏଥିରେ ବିଶ୍ୱାସ କରି ସିପାହିମାନେ ଅତ୍ୟନ୍ତ ଉତ୍ତେଜିତ ହେଲେ ।

ବିଦ୍ରୋହର ବିସ୍ତାର ।—ପ୍ରଥମେ ବଙ୍ଗଦେଶର ବାରାକପୁର ଓ ବରହମପୁରର ସିପାହିମାନେ ଦାନ୍ତରେ ଟୋଟା କାଟିବାକୁ ଅସମ୍ମତ ହୋଇ

ବିଦ୍ରୋହର ଚିହ୍ନ ଦେଖାଇଥିଲେ । ସେମାନଙ୍କଠାରୁ ଅସ୍ତ୍ରଶସ୍ତ୍ର ଛଡ଼ାଇ-ନିଆଯାଇ ସେମାନଙ୍କୁ ଦଣ୍ଡ ଦିଆଗଲା । ପ୍ରକୃତ ବିଦ୍ରୋହ ପ୍ରଥମେ ମେରଟ ସହରରେ ଆରମ୍ଭ ହୋଇଥିଲା । ୧୮୫୭ ମଇମାସ ୧୦ ତାରିଖରେ ମେରଟର ସିପାହୀମାନେ ବିଦ୍ରୋହୀ ହେଲେ । ଏମାନେ ଘର ପୋଡ଼ିଦେଲେ, ଯେଉଁଠାରେ ଇଂରେଜ ଦେଖିଲେ ସେଠାରେ ତାହାଙ୍କୁ ହତ୍ୟାକଲେ, ଏବଂ କ୍ରମେ ଦିଲ୍ଲୀ ଅଭିମୁଖରେ ଅଗ୍ରସର ହେଲେ । ସେମାନେ ଦିଲ୍ଲୀରେ ଉପସ୍ଥିତ ହେଲାକ୍ଷଣି ସେଠାର ସିପାହୀମାନେ ବିଦ୍ରୋହୀ ହେଲେ ଏବଂ ତତ୍‌କାଳୀନ ନାମମାତ୍ର ମୋଗଲସମ୍ରାଟ୍ ବାହାଦୁରସାହଙ୍କୁ ଦିଲ୍ଲୀର ସମ୍ରାଟ୍ ବୋଲି ଘୋଷଣା କଲେ । ତତ୍ପରେ ଉତ୍ତର ଭାରତବର୍ଷର ଯେଉଁ ସ୍ଥାନରେ ସିପାହୀ ଥିଲେ ସେହି ସ୍ଥାନରେ ବିଦ୍ରୋହ ଲାଗିଲା । ପ୍ରତ୍ୟେକ ଷ୍ଟେସନରେ ସିପାହୀମାନେ ଇଂରେଜମାନଙ୍କୁ ହତ୍ୟା କରୁଥିଲେ ଓ ଖଜଣା-ଖାନା ଲୁଟିକରି ନେଇ ସେମାନଙ୍କର କେନ୍ଦ୍ରସ୍ଥଳୀ ଦିଲ୍ଲୀ କିମ୍ବା ଲକ୍ଷ୍ନୌକୁ ଅଗ୍ରସର ହେଉଥିଲେ ।

କାନପୁର ବିଦ୍ରୋହ ।—ଜୁନମାସ ୪ ତାରିଖରେ ଏହିଠାରେ ବିଦ୍ରୋହାରମ୍ଭ ହେଲା । ସିପାହୀମାନେ କେତେକ ଘର ପୋଡ଼ିଦେଇ ଦିଲ୍ଲୀ ଅଭିମୁଖରେ ଅଗ୍ରସର ହେଲେ । ବାଜିରାଓଙ୍କ ପୋଷ୍ୟପୁତ୍ର ନାନାସାହେବ ସେମାନଙ୍କୁ ଲେଉଟାଇଆଣି ସେମାନଙ୍କର ନେତା ହେଲେ । ବିଦ୍ରୋହୀମାନେ ନଗର ଲୁଣ୍ଠନ କରି ଇଂରେଜ ଦେଖିବାମାତ୍ରେ ହତ୍ୟା କଲେ ଏବଂ ତତ୍ପରେ କାନପୁରସ୍ଥ ଇଂରେଜଶିବିର ଅବରୋଧ କଲେ । ଶିବିରସ୍ଥ ଇଂରେଜମାନଙ୍କର ଅନ୍ନଜଳର ଅଭାବ ହେଲା । ଜୁନମାସ ୨୬ତାରି-ଖରେ ନାନାସାହେବ ସେମାନଙ୍କୁ କହିପଠାଇଲେ ଅସ୍ତ୍ର ତ୍ୟାଗ କଲେ ତୁମ୍ଭମାନଙ୍କୁ ଏଲାହାବାଦ ଯିବାକୁ ଦିଆଯିବ । ଏଥିରେ ବିଶ୍ୱାସ କରି ଜୁନମାସ ତା ୨୭ ଦିନରେ ପ୍ରାୟ ୪୫୦ ଜଣ ଇଂରେଜ ଶିବିର ତ୍ୟାଗକରି

ନୌକା ଅଟେରହଣ କରିବାମାତ୍ରେ, ସିପାହିମାନେ ଗଙ୍ଗାର ଉଭୟ-କୂଳରୁ ସେମାନଙ୍କ ଉପରେ ଗୁଳିବୃଷ୍ଟି କଲେ । ଅନେକ ଇଂରେଜ ହତ ହେଲେ । ନାନାସାହେବ ଅବଶିଷ୍ଟ ସ୍ତ୍ରୀ ଓ ବାଳକମାନଙ୍କୁ ବନ୍ଦ କରି ରଖିଲେ । ସେନାପତି ହାବେଲକ୍ କାନପୁର ଅଡ଼କୁ ଆସୁଥିବାର ଶୁଣି ସେ ସେହି ସ୍ତ୍ରୀ, ବାଳକ ଓ ବାଳିକାମାନଙ୍କୁ ଅତି ନିଷ୍ଠୁର ଭାବରେ ହତ୍ୟାକରି ମୃତଦେହଗୁଡ଼ିକ ଏକ କୂପମଧ୍ୟରେ ପକାଇଦେଇ ପଳାଇଲେ ।

ଅଯୋଧ୍ୟା, ରୋହିଲଖଣ୍ଡ ଓ ମଧ୍ୟଭାରତରେ ବିଦ୍ରୋହ ।—ଲକ୍ଷ୍ନୌ-ନଗରର ସିପାହିମାନେ ମେ ମାସ ୩ ତାରିଖରେ ବିଦ୍ରୋହୀ ହେଲେ । ବିଦ୍ରୋହ ଅତି ଶୀଘ୍ର ସମସ୍ତ ଅଯୋଧ୍ୟା ଓ ରୋହିଲଖଣ୍ଡରେ ବ୍ୟାପିଗଲା । ବେଗମ୍ ଓ ଅନେକ ତାଲୁକ-ଦାର ଏହି ବିଦ୍ରୋହରେ ଯୋଗ ଦେଇ-ଥିଲେ । ବିଦ୍ରୋହୀମାନେ ଲକ୍ଷ୍ନୌ ଅବରୋଧ କଲେ । ଜୁଲାଇମାସରେ ଅଯୋଧ୍ୟାର ଚିଫ୍ କମିଶନର ସର୍ ହେନେରି ଲରେନ୍ସ ବିଦ୍ରୋହୀମାନଙ୍କ ଦ୍ୱାରା ହତ ହୋଇଥିଲେ । ମଧ୍ୟଭାରତର ଝାନ୍ସିରେ ସିପାହିମାନେ ବିଦ୍ରୋହୀ ହେବାରୁ ଝାନ୍ସିର ରାଣୀ ସେମାନଙ୍କର ନେତ୍ରୀ ହେଲେ ଏବ ଆପଣାର ରାଜ୍ୟ ସ୍ୱାଧୀନ ବୋଲି ଘୋଷଣା କଲେ ।

ବିଦ୍ରୋହ-ଦମନ ।—୧୮୫୭ ଜୁଲାଇମାସ ତା ୧୬ ରିଖରେ ନାନା-ସାହେବଙ୍କ ସୈନ୍ୟମାନେ ହାବେଲକଙ୍କ ଦ୍ୱାରା ସମ୍ପୂର୍ଣ୍ଣରୂପେ ପରାଜିତ ହେଲେ । ହାବେଲକ୍ କାନପୁରରେ ପହୁଞ୍ଚି ଦେଖିଲେ ଯେ ଦୁଇଦିନ ପୂର୍ବରୁ ନାନାସାହେବ ବନ୍ଦୀକୃତ ସ୍ତ୍ରୀ ଓ ବାଳକମାନଙ୍କୁ ହତ୍ୟାକରି ମୃତ ଦେହମାନ କୂପରେ ପକାଇଦେଇ ପଳାଇଯାଇଅଛନ୍ତି । ତିନମାସ ଅବରୋଧପରେ ଦିଲ୍ଲୀନଗର ସେପ୍ଟେମ୍ବରମାସରେ ପୁନରଧିକୃତ ହୋଇଥିଲା, କିନ୍ତୁ ଇଂରେଜ ସେନାପତି ନିକୋଲସନ୍ ନିହତ ହୋଇ-ଥିଲେ । ବୃଦ୍ଧ ମୋଗଲ ସମ୍ରାଟ୍ ବନ୍ଦୀ ହେଲେ ଏବ ରେଙ୍ଗୁନକୁ ପଠା-

ଯାଇଥିଲେ । ତାଙ୍କର ଦୁଇ ପୁଅ ଓ ଏକ ପୌତ୍ରଙ୍କୁ ଗୁଳିଦ୍ୱାରା ହତ୍ୟା କରାଯାଇଥିଲା । କିଛିଦିନ ପରେ ଜେନେରାଲ ହାବେଲକ୍ ଓ ଦେହ୍ରାମ୍ ଲକ୍ଷ୍ନୌ ଅଡ଼କୁ ଅଗ୍ରସର ହେଲେ, କିନ୍ତୁ ଏମାନଙ୍କର ସୈନ୍ୟ ଅଳ୍ପ ଥିବାରୁ ଏମାନେ ନିଜେ ଅବରୁଦ୍ଧ ହେଲେ । ପରେ ସର୍ କଲିନ୍ କାମ୍ପବେଲ୍ ଆସି ଏମାନଙ୍କୁ ଉଦ୍ଧାର କରିଥିଲେ (ନଭେମ୍ବର ୧୮୫୭) ।

୧୮୫୮ ମସିହାର ମଇମାସରେ କଲିନ୍ ବରେଲିନଗର ପୁନରୁଦ୍ଧାର କଲେ । ଅଯୋଧ୍ୟା ଓ ରୋହିଲଖଣ୍ଡରେ ଶାନ୍ତି ସ୍ଥାପିତ ହେଲା । ଇତିମଧ୍ୟରେ ସର୍ ହିଉ ରୋଜ୍ ମଧ୍ୟଭାରତରେ ଶାନ୍ତିସ୍ଥାପନ କରିଥିଲେ । ଝାନ୍ସିର ରାଣୀ ଓ ତାନ୍ତିଅତୋପି ନାମକ ଜଣେ ମରହଟ୍ଟା ବ୍ରାହ୍ମଣ ଏହାଙ୍କ ସଙ୍ଗେ ଘୋର ଯୁଦ୍ଧ କରିଥିଲେ । ଝାନ୍ସିର ରାଣୀ ଯୁଦ୍ଧ କରୁ କରୁ ହତ ହୋଇଥିଲେ (୧୮୫୮ ଜୁନ ତା ୬ ଦିନ) । ତାନ୍ତିଅ ପୁନଃ ପୁନଃ ପରାଜିତ ହୋଇ ପଳାଇଯାଉଥିଲେ । ୧୮୫୯ ରେ ସେ ଧୃତ ହେବାରୁ ତାଙ୍କୁ ଫାଶି ଦିଆଯାଇଥିଲା ।

## ଇଂରେଜରାଜକର୍ତ୍ତୃକ ପ୍ରତ୍ୟକ୍ଷଭାବରେ ଭାରତଶାସନ ଏବଂ ମହାରାଣୀଙ୍କ ଘୋଷଣାପତ୍ର ।

ଭାରତବର୍ଷର ଶାସନକାର୍ଯ୍ୟ ଉତ୍ତମରୂପେ ପରିଚାଳିତ ହେବା ଉଦ୍ଦେଶ୍ୟରେ ୧୮୫୮ ମସିହାରେ ପାର୍ଲିମେଣ୍ଟ ମହାସଭାରେ ଏକ ଆଇନ ପ୍ରଣୀତ ହେଲା । ଏହି ଆଇନ ଅନୁସାରେ ଇଂଲଣ୍ଡେଶ୍ୱରୀ ମହାରାଣୀ ଭିକ୍ଟୋରିଆ କମ୍ପାନିଙ୍କ ହସ୍ତରୁ ଭାରତଶାସନର ଭାର ସ୍ୱୟଂ ଗ୍ରହଣ କରିଥିଲେ । ସେହିଦିନଠାରୁ ଭାରତବର୍ଷ ଇଂଲଣ୍ଡରାଜକର୍ତ୍ତୃକ ତାହାଙ୍କର ଏକ ପ୍ରଧାନ ମନ୍ତ୍ରୀଙ୍କ ସାହାଯ୍ୟରେ ଶାସିତ ହେଉଅଛି ଏହି ମନ୍ତ୍ରୀଙ୍କୁ ଭାରତର "ସେକ୍ରେଟରି ଅଫ୍ ଷ୍ଟେଟ୍" ବୋଲାଯାଏ ଏହାଙ୍କ

ସମ୍ରାଜ୍ଞୀ 'ଇଣ୍ଡିଅ ଏମ୍ପ୍ରେସ୍' ବା ଭାରତସମ୍ରାଜ୍ଞୀ ହଅନ୍ତି । ଏହି ଦିନଠାରୁ ଭାରତର ଗବର୍ଣ୍ଣରଜେନେରାଲ୍ "ଭାଇସ୍‌ରୟ୍" ଅର୍ଥାତ୍ ରାଜପ୍ରତିନିଧି ଉପାଧି ପାଇଅଛନ୍ତି ।

ମହାରାଣୀଙ୍କ ଘୋଷଣାପତ୍ର-୧୮୫୮ ମସିହା ନବେମ୍ବର ମାସ ୧ ତାରିଖରେ ଏଲାହାବାଦ ନଗରରେ ଏକ ବୃହତ୍ ଦରବାର ହୋଇଥିଲା । ଲର୍ଡ କାନିଙ୍ଗ୍ ଏହି ଦରବାରରେ ମହାରାଣୀ ଭିକ୍ଟୋରିଅଙ୍କର ଭାରତବାସୀମାନଙ୍କ ନିକଟକୁ ପ୍ରେରିତ ଏକ ଘୋଷଣାପତ୍ର ପାଠ କରିଥିଲେ । ସେହି ଘୋଷଣାପତ୍ର ଭାରତବାସିମାନଙ୍କର ପ୍ରଧାନ ସନନ୍ଦ । ତାହାର ସାରମର୍ମ ନିମ୍ନରେ ଦିଆଗଲା:—



ମହାରାଣୀ ଭିକ୍ଟୋରିଆ ।

"ମହାରାଣୀ ଭିକ୍ଟୋରିଆ ଆଜିଠାରୁ ଭାରତର ଶାସନଭାର ନିଜ ହାତରେ ଗ୍ରହଣ କଲେ । ଆଜିଠାରୁ ଭାରତର ଲୋକେ ଗୁଣବାନ୍ ହେଲେ, ଜାତି ଧର୍ମ ଓ ବର୍ଣ୍ଣନିର୍ବିଶେଷରେ ସରକାରୀ କାର୍ଯ୍ୟରେ ନିଯୁକ୍ତ ହୋଇପାରିବେ । କମ୍ପାନୀଙ୍କ ଶାସନକାଳରେ ଯାହାଙ୍କ ସଙ୍ଗରେ ଯେଉଁ ସନ୍ଧି କିମ୍ବା ବନ୍ଦୋବସ୍ତ ହୋଇଅଛି ତାହା ସେହିପରି ରହିବ । ସରକାର ବାହାଦୁର ଲୋକଙ୍କ ଧର୍ମରେ ହସ୍ତକ୍ଷେପ କରିବେ ନାହିଁ । ଭାରତର ପୁରାତନ

ଜାତ, ଜାତି, ଅଗ୍ରଭ, ବ୍ୟବହାର ପ୍ରତି ସମ୍ମାନ ପ୍ରଦର୍ଶନ କରାଯିବ । ନ୍ୟାୟ ବୃତ୍ତିଶୋଧନର ମୂଳମନ୍ତ୍ର ହେବ । ଦେଶୀୟ ରାଜାମାନେ ଅପତ୍ୟହୀନ ହେଲେ ପୋଷ୍ୟପୁତ୍ର ଗ୍ରହଣ କରିପାରିବେ ।"

---

## ରାଜପ୍ରତିନିଧିମାନଙ୍କ ଅଧୀନରେ ଭାରତବର୍ଷ ।

ଲର୍ଡ଼ କାନିଙ୍ଗ୍—ପାର୍ଲିମେଣ୍ଟ ମହାସଭାର ଆଇନ ଅନୁସାରେ ଲର୍ଡ଼ କାନିଙ୍ଗ୍ ଭାରତର ପ୍ରଥମ ଭାଇସ୍‌ରୟ ହେଲେ (୧୮୫୮) । ସିପାହି-ବିଦ୍ରୋହପରେ ଶାନ୍ତିସ୍ଥାପନ କରିବାଲାଗି ସେ ଦୋଷିମାନଙ୍କ ଉପରେ ଏତେ ଦୟା ପ୍ରକାଶ କରିଥିଲେ ଯେ, ତାହାଙ୍କୁ ଲୋକେ "ଦୟାଳୁ କାନିଙ୍ଗ୍" ଆଖ୍ୟା ଦେଇଥିଲେ । ବିଦ୍ରୋହ ଦମନ କରିବାରେ ସରକାରଙ୍କର ୪ କୋଟି ଟଙ୍କା ଋଣ ହୋଇପଡ଼ିଥିଲା । ଆଉ ସାମରିକ ବିଭାଗରେ ଏକ କୋଟି ଟଙ୍କା ଖରଚ ବଢ଼ିଥିଲା । ଏ ସମସ୍ତ ପୂରଣ କରିବା ସକାଶେ ବିଲାତରୁ ଜେମସ୍ ୱିଲ୍‌ସନ୍ ନାମକ ଜଣେ ରାଜସ୍ୱସଚିବ ଭାରତକୁ ଆସିଥିଲେ । ସେ ଲୋକଙ୍କର ଆୟଉପରେ କର ବସାଇଥିଲେ, ଆଉ କାଗଜର ନୋଟ ଚଳାଇଥିଲେ । ୧୮୬୦ ରେ ଲର୍ଡ଼ ମେକଲେଙ୍କ ଦ୍ୱାରା ସଙ୍କଳିତ ଦଣ୍ଡବିଧି ଆଇନ ଜାରି ହୋଇଥିଲା । ୧୮୬୧ରେ ପ୍ରତ୍ୟେକ ପ୍ରେସିଡେନ୍‌ସିରେ ସଦର ଅଦାଲତ ପରିବର୍ତ୍ତରେ ହାଇକୋର୍ଟ ସ୍ଥାପିତ ହୋଇଥିଲା ।

ଲର୍ଡ଼ ଏଲ୍‌ଗିନ୍—୧୮୬୨ ରେ ଲର୍ଡ଼ ଏଲ୍‌ଗିନ୍ ଭାରତକୁ ଭାଇସରୟ ହୋଇ ଆସିଥିଲେ । କିନ୍ତୁ ଅଳ୍ପଦିନପରେ ସେ ଏଠାରେ ପ୍ରାଣତ୍ୟାଗ କଲେ (୧୮୬୩) । ନୂତନ ଭାଇସରୟ ଆସିବା ପର୍ଯ୍ୟନ୍ତ ସର୍ ୱିଲିୟମ୍ ଡେନିସନ ଏକ୍‌ଟିଙ୍ଗ୍ ଭାଇସ୍‌ରୟ ହୋଇଥିଲେ ।

ସର୍ ଜନ୍ ଲରେନ୍ସ—ଲରେନ୍ସ ୧୮୬୪ରେ ଭାରତକୁ ଆସିଥିଲେ ।

ସିପାହି ବିଦ୍ରୋହ ସମୟରେ ସେ ପଞ୍ଜାବର ଶାସନକର୍ତ୍ତା ଥିଲେ । ଏହାଙ୍କ ଶାସନଗୁଣରେ ଶିଖମାନେ ବିଦ୍ରୋହୀ ହୋଇ ନ ଥିଲେ । ଏହାଙ୍କ ସମୟରେ ଭୁଟାନ ଯୁଦ୍ଧ ହୋଇଥିଲା । ଇଂରେଜମାନେ ଦୋଆର ପ୍ରଦେଶକୁ ନିଜରାଜ୍ୟରେ ଭୁକ୍ତ କରିଥିବାରୁ ଏଯାବତ୍ ଭୁଟାନରାଜାଙ୍କୁ କିଛି କର ଦେଉଥିଲେ । ଏପରି ବନ୍ଦୋବସ୍ତ ହେଲେ ସୁଦ୍ଧା ଭୁଟାନିମାନେ ଅନେକ ସମୟରେ ଏ ଦେଶକୁ ଆସି ଲୁଟି କରୁଥିଲେ । ଲରେନ୍ସ ସେମାନଙ୍କୁ ବାରଣ କରି ଅକୃତକାର୍ଯ୍ୟ ହେଲେ । ଏଣୁ ଯୁଦ୍ଧଘୋଷଣା ହେଲା । ଫଳସ୍ୱରୂପ ଦୋଆର ଇଂରେଜଦଖଲକୁ ଆସିଲା, ଇଂରେଜମାନଙ୍କର କରଦେବା ବନ୍ଦ ହେଲା ।

୧୮୬୬ ରେ ଓଡ଼ିଶାରେ ଗୋଟିଏ ଭୟାନକ ଦୁର୍ଭିକ୍ଷ ହୋଇଥିଲା । ଏହାକୁ "ନଅଙ୍କ" ଦୁର୍ଭିକ୍ଷ କହନ୍ତି । ଏଥିରେ ପ୍ରାୟ ୧୦ ଲକ୍ଷ ଲୋକ ମରିଥିଲେ ।

୧୮୬୩ରେ ଅଫଗାନ ଆମୀର ଦୋସ୍ତମହମ୍ମଦଙ୍କର ମୃତ୍ୟୁ ହେଲା । ଆମୀରଦେଲାଗି ତାଙ୍କ ପୁତ୍ରମାନଙ୍କ ମଧ୍ୟରେ ବିବାଦ ଲାଗିଥିଲା । ଅବଶେଷରେ ଶେରଅଲି ନାମକ ଦୋସ୍ତମହମ୍ମଦଙ୍କର ଏକ ପୁତ୍ର ଆମୀର ହେବାରୁ ଲରେନ୍ସ ତାହା ସ୍ୱୀକାର କଲେ । ୧୮୬୯ରେ ଲରେନ୍ସ ଭାରତ ତ୍ୟାଗକଲେ ।

ଲର୍ଡ ମେୟୋ—୧୮୬୯ରେ ସେ ଭାରତର ବଡ଼ଲାଟ ହୋଇଥିଲେ । ଅମ୍ବାଲାରେ ଏକ ଦରବାର କରି ସେ ଆମୀର ଶେରଅଲିଙ୍କ ଅଭ୍ୟର୍ଥନାପୂର୍ବକ ତାହାଙ୍କୁ ଅଫଗାନସ୍ଥାନର ଆମୀର ବୋଲି ସ୍ୱୀକାର କରିଥିଲେ ।

ଏହାଙ୍କ ସମୟରେ ମହାରାଣୀ ଭିକ୍ଟୋରିଆଙ୍କ ଦ୍ୱିତୀୟ ପୁତ୍ର ଡିଉକ ଅବ ଏଡ଼ିନବରା ଭାରତ ଦର୍ଶନ କରିବାକୁ ଆସିଥିଲେ (୧୮୬୯) । ୧୮୭୨ରେ

ଲର୍ଡ ମେୟୋ ରେଙ୍ଗୁନ ପରିଦର୍ଶନ କରିବାକୁ ଗଲେ । ଫେରିଆସିବା ସମୟରେ ଅଣ୍ଡେମାନ ଦ୍ୱୀପରେ ଏକ ମୁସଲମାନ ତାହାଙ୍କୁ ହତ୍ୟା କରିଥିଲା ।

ସେ କୃଷିବିଭାଗ ନାମରେ ଏକ ସରକାରୀ ବିଭାଗ ସ୍ଥାପନ କରିଥିଲେ । ସଡ଼କ, କେନାଲ ଏବଂ ରେଲୱେ ନିର୍ମାଣ କରି ପ୍ରଜାମାନଙ୍କର ଅନେକ ହିତକର କାର୍ଯ୍ୟ କରିଥିଲେ ।

ଲର୍ଡ ନର୍ଥବ୍ରୁକ୍ ।—ସେ ୧୮୭୨ ରେ ଭାଇସରୟ ହୋଇଥିଲେ । ଏହାଙ୍କ ସମୟରେ ବଙ୍ଗଦେଶରେ ଏକ ଦୁର୍ଭିକ୍ଷ ହୋଇଥିଲା, କିନ୍ତୁ ରାଜକର୍ମଚାରୀମାନଙ୍କ ଯତ୍ନରେ ଅଧିକ ଲୋକଙ୍କର ପ୍ରାଣ ବିନଷ୍ଟ ହୋଇ ନ ଥିଲା ।

୧୮୭୫ ରେ ବରୋଦାର ଗାଇକୋୱାଡ ଇଂରେଜ ରେସିଡେଣ୍ଟଙ୍କୁ ବିଷପ୍ରୟୋଗ କରିଥିବା ଅଭିଯୋଗରେ ଅଭିଯୁକ୍ତ ହୋଇ ସିଂହାସନଚ୍ୟୁତ ହୋଇଥିଲେ । ଇଂରେଜମାନେ ସେହି ବଂଶର ଆଉ ଏକ ଲୋକଙ୍କୁ ସିଂହାସନ ପ୍ରଦାନ କଲେ ।

୧୮୭୫ ଖ୍ରୀଷ୍ଟାବ୍ଦରେ ଆମ୍ଭମାନଙ୍କର ସ୍ୱର୍ଗୀୟ ସମ୍ରାଟ୍ ୭ମ ଏଡ୍‌ୱାର୍ଡ ତତ୍କାଳୀନ ପ୍ରିନ୍ସ ଅଫ୍ ୱେଲସ୍, ଭାରତକୁ ଭ୍ରମଣ କରିବା ନିମନ୍ତେ ଆସିଥିଲେ ।

ଏହାଙ୍କ ସମୟରେ ଆସାମପ୍ରଦେଶ ବଙ୍ଗଦେଶରୁ ବିଚ୍ଛିନ୍ନ ହୋଇ ଏକ ଚିଫ୍‌କମିଶନରଙ୍କ ଅଧୀନରେ ରହିଥିଲା ।

ଲର୍ଡ ଲିଟନ ।—ଲର୍ଡ ଲିଟନ୍ ୧୮୭୬ରେ ଭାରତର ଶାସନଭାର ଗ୍ରହଣ କଲେ । ୧୮୭୭ ଜାନୁଆରି ୧ ତାରିଖରେ ଲିଟନ୍ ଦିଲ୍ଲୀରେ ଏକ ବୃହତ୍ ଦରବାର କରିଥିଲେ । ଏହି ଦରବାରରେ ମହାରାଣୀ

ଭିକ୍ଟୋରିଆ ଭାରତସାମ୍ରାଜ୍ୟର ସମ୍ରାଜ୍ଞୀଉପାଧି ଗ୍ରହଣ କରିଥିବାର ଘୋଷଣା କରାଯାଇଥିଲା ।

ଏହି ଦରବାର ସମୟରେ ଦାକ୍ଷିଣାତ୍ୟରେ ଭୟାନକ ଦୁର୍ଭିକ୍ଷ ଉପସ୍ଥିତ ହୋଇଥିଲା । ସରକାର ବାହାଦୁର ଦୁର୍ଭିକ୍ଷ ନିବାରଣ ପାଇଁ ପ୍ରାୟ ୧୮ କୋଟି ଟଙ୍କା ବ୍ୟୟ କଲେ ତଥା ପ୍ରାୟ ୫୦ ଲକ୍ଷ ଲୋକ ନଷ୍ଟ ହୋଇଥିଲେ ।

ଦ୍ୱିତୀୟ ଅଫଗାନସମର ।—ଅମୀର ଶେରଅଲି ରୁଷୀୟମାନଙ୍କ ସଙ୍ଗେ ଷଡ଼ଯନ୍ତ୍ର କରି ରୁଷୀୟ ଦୂତଙ୍କୁ ସମାଦରେ ଗ୍ରହଣ କରିଥିଲେ ଏବଂ ଇଂରେଜ ଦୂତଙ୍କୁ ଦେଶମଧ୍ୟରେ ପ୍ରବେଶ କରିବାକୁ ଦେଇ ନ ଥିଲେ । ତହୁଁ ଲିଟନ୍ ଶେରଅଲିଙ୍କ ବିରୁଦ୍ଧେ ଯୁଦ୍ଧ ଘୋଷଣା କଲେ । ୧୮୭୮ ରେ ଶେର-ଅଲି ତୁର୍କିସ୍ଥାନକୁ ପଳାୟନ କଲେ ଏବଂ ଅଳ୍ପଦିନ ପରେ ସେଠାରେ ପ୍ରାଣତ୍ୟାଗ କଲେ । ଶେରଅଲିଙ୍କ ପୁତ୍ର ୟାକୁବ୍‌ଖାଁ ଅମୀର ହୋଇ ଇଂରେଜମାନଙ୍କ ସଙ୍ଗରେ ସନ୍ଧି କଲେ । ୟାକୁବ୍‌ଖାଁ କାବୁଲରେ ଜଣେ ଇଂରେଜ ରେସିଡେଣ୍ଟ ରଖିବାକୁ ସମ୍ମତ ହେଲେ । କେତେକ ମାସପରେ କାବୁଲବାସିମାନେ ଉକ୍ତ ରେସିଡେଣ୍ଟ ଓ ତାହାଙ୍କ କର୍ମଚାରୀମାନଙ୍କୁ ହତ୍ୟାକଲେ । ପୁଣି ଯୁଦ୍ଧ ଆରମ୍ଭ ହେଲା । ୟାକୁବ୍‌ଖାଁଙ୍କୁ ସିଂହାସନଚ୍ୟୁତ କରାଯାଇ ଭାରତକୁ ପଠାହେଲା । ଇଂରେଜ ସେନାପତି ସର୍ ଫ୍ରେଡେରିକ୍ ରବର୍ଟସ୍ ଏକଦଳ ସୈନ୍ୟ ନେଇ କାବୁଲରେ ରହିଲେ । ଏହି ସମୟରେ ବିଲାତରେ ମନ୍ତ୍ରିଦଳର ପରିବର୍ତ୍ତନ ହେବାରୁ ଲିଟନ୍ ୧୮୮୦ ରେ କାର୍ଯ୍ୟରୁ ଇସ୍ତଫା ଦେଲେ ।

ଏହାଙ୍କ ସମୟରେ ମୁଦ୍ରାଯନ୍ତ୍ର ସ୍ୱାଧୀନତା ହରାଇଥିଲା । ଅସ୍ତ୍ରବ୍ୟବହାର-ନିଷେଧ ବିଷୟକ ଆଇନ ପ୍ରଚଳିତ ହୋଇଥିଲା ।

ଲର୍ଡ ରିପନ୍ ।—ଲର୍ଡ ରିପନ୍ ୧୮୮୦ ରେ ଭାଇସ୍‌ରୟ ହେଲେ ।


ଲର୍ଡ ରିପନ ।

ୟାକୁବ୍‌ଖାଁଙ୍କ ଭାଇ ଆୟୁବ୍‌ଖାଁ ଇଂରେଜମାନଙ୍କସହ ଶତ୍ରୁତା-ଚରଣ କରି ଏକଦଳ ଇଂରେଜ-ସୈନ୍ୟଙ୍କୁ ପରାସ୍ତ କରିଥିଲେ । କିନ୍ତୁ ୧୮୮୦ ସେପ୍ଟେମ୍ବର ମାସରେ ସେ ଇଂରେଜସେନା-ପତି ରବର୍ଟ୍‌ସଙ୍କ ଦ୍ୱାରା ପରାଜିତ ହୋଇ ପାରସ୍ୟକୁ ପଳାୟନ କଲେ । ଇଂରେଜମାନେ ଶେରଅଲିଙ୍କ ଜ୍ୟେଷ୍ଠ ଭ୍ରାତାଙ୍କ ଜ୍ୟେଷ୍ଠ ପୁତ୍ର ଅବଦୁର ରହ-ମାନଙ୍କୁ ଅଫଗାନ ସିଂହାସନରେ ବସାଇଥିଲେ (୧୮୮୦) । ୧୮୮୧ ରେ ଇଂରେଜସୈନ୍ୟ ଅଫଗାନସ୍ଥାନରୁ ଫେରି ଆସିଥିଲେ ।

୧୮୮୨ରେ ରିପନ୍ ମୁଦ୍ରାଯନ୍ତ୍ରକୁ ପୁନଶ୍ଚ ସ୍ୱାଧୀନତା ଦେଇଥିଲେ । ଭାରତବାସିଙ୍କୁ ଏକପ୍ରକାର ଆତ୍ମଶାସନର ଭାର ଦେବାର ଆଲୋଚନା ମଧ୍ୟ ଏହାଙ୍କ ସମୟରେ ହୋଇଥିଲା । ଏହାଙ୍କ ସମୟରେ କଲିକତାରେ ଗୋଟିଏ ଆନ୍ତର୍ଜାତିକ ପ୍ରଦର୍ଶନୀ ହୋଇଥିଲା । ଲର୍ଡ ରିପନ୍ ପ୍ରଜାମାନଙ୍କୁ ବଡ଼ ଭଲପାଉଥିଲେ ଏବଂ ସେମାନଙ୍କର ହିତଲାଗି ସର୍ବଦା ଚେଷ୍ଟା କରୁଥିଲେ ।

୧୮୮୪ ରେ ସେ ବିଲାତକୁ ଗଲେ । ତାହାଙ୍କ ବିଲାତଗମନକାଳରେ ଭାରତବାସିମାନେ ଗଭୀର ଶୋକ ପ୍ରକାଶ କରିଥିଲେ ।

ଲର୍ଡ ଡଫରିନ୍ ।—୧୮୮୪ ରେ ଲର୍ଡ ଡଫରିନ୍ ଶାସନଭାର ଗ୍ରହଣ କରିଥିଲେ । ଏହାଙ୍କ ସମୟରେ ଅମୃଣାସନଥଇନ ଚଢ଼ଥିଲା ଏଁ।ର

ବଡ଼ ବଡ଼ ନଗର ଏବଂ ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଗୋଟିଏ ସଭା ସ୍ଥାପିତ ହୋଇ ତହିଁରେ ଦେଶୀୟ ଲୋକମାନେ ସଭ୍ୟ ହେଲେ । ସେହି-ସବୁ ସଭାହସ୍ତରେ ନଗର ଓ ଜିଲ୍ଲାର ସ୍ୱାସ୍ଥ୍ୟରକ୍ଷା ଏବଂ ପଥ ଓ ଘାଟର ନିର୍ମାଣ-ଭାର ଦିଆଯାଇଥିଲା ।

୧୮୮୫ ରେ ଡଫରିନ୍ ରାୱଲପିଣ୍ଡିରେ ଏକ ଦରବାର କରି ଆମୀର ଅବଦୁର ରହମାନଙ୍କୁ ସମ୍ବର୍ଦ୍ଧନା କରିଥିଲେ ।

ତୃତୀୟ ବ୍ରହ୍ମସମର ।—ବ୍ରହ୍ମରାଜ ଥିବ୍ ଇଂରେଜବଣିକ୍‌ମାନଙ୍କ ଉପରେ ଅତ୍ୟାଚାର କରିବାକୁ ଆରମ୍ଭ କଲେ । ସେ କାରଣ ନ ମାନିବାରୁ ଡଫରିନ୍ ଯୁଦ୍ଧଘୋଷଣା କଲେ । ଇଂରେଜସୈନ୍ୟ ବ୍ରହ୍ମରାଜଧାନୀ ମାନ୍ଦାଲେରେ ପହଞ୍ଚିବାମାତ୍ରେ ଥିବ୍ ଆତ୍ମସମର୍ପଣ କଲେ । ଥିବ ବନ୍ଦୀ ହୋଇ ଭାରତକୁ ଆସିଲେ । ୧୮୮୬ ଜାନୁଆରି ୧ ତାରିଖରେ ବ୍ରହ୍ମଦେଶ ଭାରତସାମ୍ରାଜ୍ୟଭୁକ୍ତ ହେଲା ।

୧୮୮୭ ରେ ଭାରତସମ୍ରାଜ୍ଞୀ ଭିକ୍ଟୋରିଆଙ୍କ ୫୦ ବର୍ଷ ରାଜତ୍ୱ ପୂର୍ଣ୍ଣ ହୋଇଥିବାରୁ ଜୁବିଲି ଉତ୍ସବ ହୋଇଥିଲା । ୧୮୮୮ରେ ଡଫରିନ୍ ସ୍ୱଦେଶଗମନ କରିଥିଲେ ।

ଲର୍ଡ ଲାନ୍ସଡାଉନ ।—୧୮୮୮ ମସିହା ଡିସେମ୍ବରମାସରେ ଲାନ୍ସଡାଉନ ଭାରତଶାସନଭାର ଗ୍ରହଣ କରିଥିଲେ । ୧୮୯୧ରେ ମଣିପୁର ରାଜ୍ୟରେ ଇଂରେଜ ରେସିଡେଣ୍ଟ, ଆସାମର ଚିଫ୍‌କମିଶନର ପ୍ରଭୃତି କେତେକ ଇଂରେଜ କର୍ମଚାରୀ ନିହତ ହେବାରୁ ଲାନ୍ସଡାଉନ ମଣିପୁର ରାଜାଙ୍କୁ ଦ୍ୱୀପାନ୍ତରିତ ଓ ତାହାଙ୍କ ଭ୍ରାତାଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କଲେ । ରାଜବଂଶର ଏକ ବାଳକ ମଣିପୁରରେ ରାଜା ହେଲେ ।

ଲର୍ଡ ଏଲ୍‌ଗିନ୍ ।—୧୮୯୪ରେ ଏଲ୍‌ଗିନ୍ ଭାଇସ୍‌ରୟ ହେଲେ । ଏ ସ୍ୱର୍ଗୀୟ ଭାଇସ୍‌ରୟ ଏଲ୍‌ଗିନ୍‌ଙ୍କ ପୁତ୍ର । ୧୮୯୬ରେ ଭାରତରେ ପ୍ଲେଗରୋଗ

ଦେଖାଦେଲା । ପ୍ଲେଗ ଭାରତରୁ ବର୍ତ୍ତମାନପର୍ଯ୍ୟନ୍ତ ଯାଇ ନାହିଁ । ଏହି ପ୍ଲେଗରେ ବହୁସଂଖ୍ୟକ ଲୋକ ନଷ୍ଟ ହୋଇଅଛନ୍ତି ଓ ହେଉଅଛନ୍ତି । ୧୮୯୭ ରେ ଭାରତବ୍ୟାପୀ ଦୁର୍ଭିକ୍ଷ ହେଲା । ସେହି ଅବ୍ଦରେ ଗୋଟିଏ ବଡ଼ ଭୂମିକମ୍ପ ମଧ୍ୟ ହୋଇଥିଲା । ଏହି ଦୁଇ ଘଟନାରେ ବହୁସଂଖ୍ୟକ ଲୋକ ନଷ୍ଟ ହୋଇଥିଲେ ।

୧୮୯୭ରେ ମହାରାଣୀ ଭିକ୍ଟୋରିଆଙ୍କ ୬୦ ବର୍ଷ ରାଜତ୍ୱ ଉପଲକ୍ଷେ ଜୁବିଲି ଉତ୍ସବ ହୋଇଥିଲା ।

ସେହି ଅବ୍ଦରେ ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶରେ ଅମ୍ବ୍ରିବ ପ୍ରଭୃତି ଜାତିମାନେ ଉପଦ୍ରବ ଆରମ୍ଭ କରିବାରୁ ସେମାନଙ୍କ ବିରୁଦ୍ଧେ ସୈନ୍ୟ ପ୍ରେରଣ କରାଯାଇଥିଲା । ଏହି ଜାତିମାନେ ପରାଜିତ ହୋଇ ବଶ୍ୟତା ସ୍ୱୀକାର କରିଥିଲେ । ୧୮୯୯ରେ ଏଲ୍‌ଗିନ୍ ବିଲାତ ଗମନ କଲେ ।



ଲର୍ଡ଼ କର୍ଜ୍ଜନ ।

**ଲର୍ଡ଼ କର୍ଜ୍ଜନ ।**—୧୮୯୯ରେ ସେ ଶାସନଭାର ଗ୍ରହଣ କରିଥିଲେ । ୧୯୦୧ ଜାନୁଆରି ୨୨ତାରଖରେ ରାଜରାଜେଶ୍ୱରୀ ଭିକ୍ଟୋରିଆ ୬୩ ବର୍ଷ ରାଜତ୍ୱ କରି ସ୍ୱର୍ଗାରୋହଣ କରିବାରୁ ତାହାଙ୍କ ଜ୍ୟେଷ୍ଠ ପୁତ୍ର ସପ୍ତମ ଏଡ଼ୱାର୍ଡ଼ ନାମ ଧାରଣ କରି ଭାରତର ସମ୍ରାଟ୍ ହୋଇଥିଲେ ।

ଏଥିଲାଗି ଦିଲ୍ଲୀରେ ଏକ ଦରବାର ଓ ଭାରତରେ ଏକ ଉତ୍ସବ ହୋଇ-ଥିଲା । ୧୯୦୫ ରେ ଆମ୍ଭମାନଙ୍କ ବର୍ତ୍ତମାନ ସମ୍ରାଟ୍ ୫ମ ଜର୍ଜ (ତତ୍-କାଳୀନ ପ୍ରିନ୍ସ ଅବ୍ ୱେଲସ୍) ଭାରତ ଭ୍ରମଣ କରିବାଲାଗି ସସ୍ତ୍ରୀକ ଆଗମନ କରିଥିଲେ ।

ଏହି ଅବ୍ଦରେ ବଙ୍ଗଳାର ପୂର୍ବ ଅଂଶ ଆସାମସହିତ ଯୋଗ କରାଯାଇ ପୂର୍ବବଙ୍ଗ ଓ ଆସାମ ଲାଗି ଆଉ ଗୋଟିଏ ନୂତନ ଲେଫ୍ଟେ-ନେଣ୍ଟ ଗବର୍ଣ୍ଣର ପଦର ସୃଷ୍ଟି ହୋଇଥିଲା । ସମ୍ବଲପୁର ମଧ୍ୟପ୍ରଦେଶରୁ ବିଚ୍ଛିନ୍ନ ହୋଇ ଓଡ଼ିଶାସଙ୍ଗେ ମିଳିତ ହୋଇଥିଲା । ଲର୍ଡ଼ କର୍ଜନ ସମସ୍ତ ରାଜକାର୍ଯ୍ୟ ବିଭାଗରେ ହସ୍ତକ୍ଷେପ କରି ସଂସ୍କାର କରିଥିଲେ । ତନ୍ମଧ୍ୟରେ ବିଶ୍ୱବିଦ୍ୟାଳୟମାନଙ୍କର ଆଇନ ସଂସ୍କାର ଏକତମ । ୧୯୦୫ ଖ୍ରୀ: ଅବ୍ଦରେ ଲର୍ଡ଼ କର୍ଜ୍ଜନ ବିଲାତକୁ ଫେରି ଯାଇଥିଲେ ।



ଲର୍ଡ଼ ମିଣ୍ଟୋ ।

୨ୟ ଲର୍ଡ଼ ମିଣ୍ଟୋ-୧୯୦୫-୧୦ । ୧୯୦୫ ଅବ୍ଦରେ ଲର୍ଡ଼ ମିଣ୍ଟୋ ଭାରତର ଶାସନଭାର ଗ୍ରହଣ କରିଥିଲେ । ଦେଶ-ମଧ୍ୟରେ ଶାନ୍ତି-ସ୍ଥାପନ ଏବଂ ବ୍ୟବସ୍ଥାପକ ସଭାମାନଙ୍କର ସଂସ୍କାର ଏହି ମହାତ୍ମାଙ୍କ ଶାସନ-କାଳର ପ୍ରଧାନ ଘଟଣା ।

ବ୍ୟବସ୍ଥାପକ ସଭାମାନଙ୍କର ସଂସ୍କାର (୧୯୧୦)—ଏହି ସଂସ୍କାର ଲର୍ଡ଼

ମିଣ୍ଟୋଙ୍କ ରାଜତ୍ୱକାଳର ଗୋଟିଏ ପ୍ରଧାନ ଘଟଣା । ଏତଦ୍ୱାରା ଭାରତବାସିମାନଙ୍କ ସମୁଦାୟ ଭାରତବର୍ଷ ଏବଂ ତାହାର ବିଭିନ୍ନ ପ୍ରଦେଶମାନଙ୍କ ନିମନ୍ତେ ଆଇନ ଓ ବାର୍ଷିକ ଆୟବ୍ୟୟର ହିସାବ ପ୍ରସ୍ତୁତ କରିବାଲାଗି ପୂର୍ବାପେକ୍ଷା ଅଧିକତର ଅଧିକାର ପ୍ରଦତ୍ତ ହୋଇଅଛି ।

ଯେଉଁମାନଙ୍କ ଲାଗି ଆଇନ ପ୍ରସ୍ତୁତ ହୁଏ ଏବଂ ଯେଉଁମାନଙ୍କ ପ୍ରଦତ୍ତ ଟିକସରୁ ଶାସନକାର୍ଯ୍ୟର ଖର୍ଚ୍ଚ ଚଳେ, ସେମାନଙ୍କର ମତାମତ ଗ୍ରହଣ ନ କରି ଆଇନ ଓ ଆୟବ୍ୟୟର ହିସାବ ପ୍ରସ୍ତୁତ କରିବା ନ୍ୟାୟସଙ୍ଗତ ନୁହେ । ପ୍ରତ୍ୟେକ ପ୍ରଜାର ମତାମତ ଗ୍ରହଣ କରିବା ରାଜାଙ୍କ ପକ୍ଷରେ ସୁବିଧାଜନକ ନୁହେ । ସେହି ହେତୁରୁ ଇଂଲଣ୍ଡ ପ୍ରଭୃତି ସବୁ ସଭ୍ୟଦେଶରେ ବିଧି ଅଛି ଯେ ରାଜା କେତେଗୁଡ଼ିଏ ନିୟମ ବାନ୍ଧିଦିଅନ୍ତି । ସେହି ନିୟମ ଅନୁସାରେ ବଡ଼ ବଡ଼ ନଗର ଓ ଜିଲ୍ଲାମାନଙ୍କର ପ୍ରଜାମାନେ କେତେଗୁଡ଼ିଏ ପ୍ରତିନିଧି ବାଛନ୍ତି । ସେହି ପ୍ରତିନିଧିମାନେ ରାଜାଙ୍କ ବ୍ୟବସ୍ଥାପକ ସଭାରେ ଆଇନ ଓ ବାର୍ଷିକ ଆୟବ୍ୟୟର ହିସାବ ପ୍ରସ୍ତୁତ ହେଲାବେଳେ ମତାମତ ଦିଅନ୍ତି । ଲର୍ଡ ଲାନ୍ସଡାଉନ୍ ଯେତେବେଳେ ଭାଇସରାୟ ଥିଲେ ସେତେବେଳେ ୧୮୯୧ ରେ ପ୍ରଜାମାନଙ୍କୁ ଏହି ଅଧିକାର କେତେକ ପରିମାଣରେ ଦିଆଯାଇଥିଲା ସତ୍ୟ, ମାତ୍ର ତାହା ସେତେ ସନ୍ତୋଷଜନକ ହୋଇ ନ ଥିଲା ; ସବୁ ଶ୍ରେଣୀର ପ୍ରଜା ନିଜ ନିଜ ପ୍ରତିନିଧି ନିର୍ବାଚନ କରି ପାରୁ ନ ଥିଲେ । ଅଧିକନ୍ତୁ ମଧ୍ୟ ବ୍ୟବସ୍ଥାପକ ସଭାମାନଙ୍କରେ ପ୍ରଜା-ନିର୍ବାଚିତ ବେସରକାରୀ ସଭ୍ୟମାନଙ୍କ ସଂଖ୍ୟା ସରକାରୀ ସଭ୍ୟମାନଙ୍କ ସଂଖ୍ୟାଠାରୁ ଅଳ୍ପତର ଥିଲା । ସେହି ହେତୁରୁ ଆମ୍ଭମାନଙ୍କର ଭୂତପୂର୍ବ ସମ୍ରାଟ୍ ସପ୍ତମ ଏଡ୍‌ୱାର୍ଡଙ୍କ ଆଦେଶାନୁସାରେ ତତ୍କାଳୀନ ଭାରତସଚିବ ଲର୍ଡ ମର୍ଲେ ପାର୍ଲିମେଣ୍ଟରେ ୧୯୦୯ ରେ ଭାରତୀୟ ବ୍ୟବସ୍ଥାପକ-ସଭାସଂସ୍କାର ବିଷୟରେ ଏକ ଆଇନ ଉପ-

ସ୍ଥାପିତ କରାଇଥିଲେ । ତାହା ମଞ୍ଜୁର ହେବାରୁ ନିମ୍ନଲିଖିତ ସଂସ୍କାରମାନ ପ୍ରବର୍ତ୍ତିତ ହେଲା ।—

ପ୍ରାଦେଶିକ ବ୍ୟବସ୍ଥାପକ ସଭାମାନଙ୍କରେ ବେସରକାରୀ ସଭ୍ୟମାନଙ୍କ ସଂଖ୍ୟା ସରକାରୀ ସଭ୍ୟମାନଙ୍କ ସଂଖ୍ୟାଠାରୁ ଅଧିକ କରାଗଲା । ବିଭିନ୍ନ ପ୍ରଦେଶର ବଡ଼ ବଡ଼ ଜମିଦାର ଏବଂ ମୁସଲମାନସମ୍ପ୍ରଦାୟ ନିଜ ନିଜ ପ୍ରତିନିଧି ନିର୍ବାଚନ କରିବାର କ୍ଷମତା ପାଇଲେ । ଜିଲା ବୋର୍ଡ଼ ଓ ମ୍ୟୁନିସ୍‌ପାଲିଟିର ବେସରକାରୀ ସଭ୍ୟମାନେ ଅଧିକସଂଖ୍ୟକ ପ୍ରତିନିଧି ନିର୍ବାଚନ କରିବାର କ୍ଷମତା ପାଇଲେ । ଯେବେ କେହି ସରକାରୀ କର୍ମଚାରୀ ଜିଲା ବୋର୍ଡ଼ ଓ ମ୍ୟୁନିସ୍‌ପାଲିଟିର ସଭ୍ୟ ଥାନ୍ତି, ସେମାନେ ବ୍ୟବସ୍ଥାପକ ସଭା ନିମନ୍ତେ ସଭ୍ୟନିର୍ବାଚନ ହେଲାବେଳେ ମତ ଦେଇ ନ ପାରିବାର ବିଧି ହେଲା । ବିଶ୍ୱବିଦ୍ୟାଳୟ ଏବଂ ବଣିକ୍ ସଭାମାନେ ମଧ୍ୟ ବ୍ୟବସ୍ଥାପକ ସଭା ନିମନ୍ତେ ନିଜ ନିଜ ସଭ୍ୟ-ନିର୍ବାଚନ କରିପାରିବାର କ୍ଷମତା ପାଇଲେ ।

ପୂର୍ବେ ଭାରତୀୟ ବ୍ୟବସ୍ଥାପକ ସଭାରେ ସଭାପତି ଭାଇସରୟଙ୍କୁ ଘେନି ୨୪ ଜଣ ସଭ୍ୟ ଥିଲେ । ତନ୍ମଧ୍ୟରୁ ସରକାରୀ ସଭ୍ୟ ୧୭ ଜଣ, ବେ-ସରକାରୀ ସଭ୍ୟ ୭ ଜଣ । ବର୍ତ୍ତମାନ ନିୟମ ହେଲା ଯେ ଭାଇସରୟଙ୍କୁ ଘେନି ତହିଁରେ ୬୮ ଜଣ ସଭ୍ୟ ରହିବେ, ତନ୍ମଧ୍ୟରୁ ସରକାରୀ ସଭ୍ୟ ହେବେ ୩୬ ଜଣ ଏବଂ ବେସରକାରୀ ସଭ୍ୟ ହେବେ ୩୨ ଜଣ ।

ଏହାପରେ ବିଭିନ୍ନ ସଂଖ୍ୟକ ସଭ୍ୟ ଘେନି ପ୍ରତ୍ୟେକ ପ୍ରଦେଶରେ ମଧ୍ୟ ଏକ ଏକ ବ୍ୟବସ୍ଥାପକ ସଭା ବସିଅଛି । ଏହି ପ୍ରତ୍ୟେକ ସଭାରେ ବେ-ସରକାରୀ ସଭ୍ୟମାନଙ୍କ ସଂଖ୍ୟା ସରକାରୀ ସଭ୍ୟମାନଙ୍କ ସଂଖ୍ୟାଠାରୁ ଅଧିକ କରାଯାଇଥିଲା ।

ଉପରେ ଯାହା ଲେଖାଗଲା ତାହା ବ୍ୟବସ୍ଥାପକ ସଭାମାନଙ୍କର ଏକ ସଂସ୍କାରମାତ୍ର । ଏଥିରୁ ତୁମ୍ଭେମାନେ ଅନୁମାନ କରିପାରିବ ଯେ

ଯୋଗ୍ୟତା ଦେଖାଇଲେ କାଳକ୍ରମେ ଭାରତୀୟ ବ୍ରିଟିଶ ପ୍ରଜାମାନେ ନିଜ ଦେଶର ଶାସନରେ ଅଧିକରୁ ଅଧିକ କ୍ଷମତା ଲାଭ କରିପାରିବେ । ଇଂରେଜ ଗଭର୍ଣ୍ଣମେଣ୍ଟଙ୍କର ଏପ୍ରକାର ସୁବିଚାର ଲାଗି ଆମ୍ଭମାନଙ୍କର ସର୍ବଦା କୃତଜ୍ଞ ରହିବା ଉଚିତ ।



ସପ୍ତମ ଏଡ୍‌ୱାର୍ଡ୍ ।

୧୯୧୦ ଖ୍ରୀଷ୍ଟାବ୍ଦର ମଇ ମାସ ୬ ତାରିଖରେ ସମ୍ରାଟ୍ ୭ମ ଏଡ୍‌ୱାର୍ଡ୍ ପରଲୋକ ଗମନ କରିଥିଲେ । ତାହାଙ୍କ ମୃତ୍ୟୁରେ ଏକା ଭାରତବାସୀ ନାହିଁ, ଜଗଦ୍‌ବାସୀ ସମସ୍ତେ ଶୋକରେ ଅଧୀର ହୋଇଥିଲେ । ରାଜନୈତିକ ବ୍ୟାପାରରେ ତାହାଙ୍କର ବୁଦ୍ଧିମତ୍ତା ଏବଂ ସମାଜର ମଙ୍ଗଳସାଧନରେ ତାହାଙ୍କର ହୃଦୟବତ୍ତା, ଏହି ଦୁଇ ମହଦ୍‌ଗୁଣ ଲାଗି ଆମ୍ଭମାନଙ୍କର ଭୂତପୂର୍ବ ସମ୍ରାଟ୍ ଜନସାଧାରଣରେ ଚିରସ୍ମରଣୀୟ ହୋଇ ରହିବେ ।

ପରପୃଷ୍ଠାରେ ଯେଉଁ ଛବି ଦୁଇଟି ଦେଖୁଅଛ ତାହା ଆମ୍ଭମାନଙ୍କର ବର୍ତ୍ତମାନ ସମ୍ରାଟ୍ ୫ମ ଜର୍ଜ ଓ ମହାରାଣୀ ମେରୀଙ୍କର ଛବି । ଶାସନ ଓ ପାଳନ ବିଷୟରେ ନବ ସମ୍ରାଟ୍ ଓ ସମ୍ରାଜ୍ଞୀଙ୍କର ମହିମା ଲୋକବିଦିତ ଏବଂ ହୃଦୟବତ୍ତାଗୁଣରେ ଉଭୟେ ପ୍ରସିଦ୍ଧି ଲାଭ କରିଅଛନ୍ତି । ବର୍ତ୍ତମାନ ତୁମ୍ଭମାନଙ୍କର ରାଜଭକ୍ତି ଦୁହିଙ୍କ ନିକଟରେ ଅର୍ପଣ କର । ପଞ୍ଚମଜର୍ଜ ଭାରତ-ସମ୍ରାଟ୍ ହୋଇ ଯେଉଁ ଘୋଷଣାପତ୍ର ପ୍ରଚାର କରିଥିଲେ ତାହା

ତାହାଙ୍କର ପିତା ଓ ପିତାମହଙ୍କ ଉଭୟଙ୍କ ଘୋଷଣାପତ୍ରର ଅନୁରୂପ । ସେହି ସମ୍ରାଟ୍‌ପଦବୀ ଗ୍ରହଣକରି ନିଜ ରାଜ୍ୟାଭିଷେକର ଘୋଷଣା





ସମ୍ରାଟ୍ ପଞ୍ଚମ ଜର୍ଜ ଏବଂ ମହାରାଣୀ ମେରି

ନିମନ୍ତେ ୧୯୧୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ ୧୨ ତାରିଖରେ ଦିଲ୍ଲୀ ନଗରରେ ଯେଉଁ ଦରବାର କରିଥିଲେ ତାହା ଅଦ୍ୟାବଧି ସମସ୍ତଙ୍କ ମନରେ ଜାଗରୂକ ଅଛି ଏବଂ ତହିଁରୁ ଭାରତବାସୀ ପ୍ରଜାମାନଙ୍କ-ପ୍ରତି ତାହାଙ୍କର ଅସୀମ ଦୟା, ଦାକ୍ଷିଣ୍ୟ ଏବଂ ସହାନୁଭୂତି ପ୍ରକାଶ ପାଉଅଛି । ଭାରତବାସୀ ପ୍ରଜାମାନଙ୍କ ଶିକ୍ଷାବୃଦ୍ଧି ନିମନ୍ତେ ଅସ୍ମ-ମାନଙ୍କର ସମ୍ରାଟ ସର୍ବଦା ମୁକ୍ତହସ୍ତ । ଦିଲ୍ଲୀର ଦରବାରରେ ଯେଉଁ ଘୋଷଣା ହୋଇଥିଲା ତଦନୁସାରେ ଭାରତର ରାଜଧାନୀ କଲିକତାରୁ ଦିଲ୍ଲୀକୁ ସ୍ଥାନାନ୍ତରିତ ହୋଇଥିଲା ଏବଂ ପୂର୍ବ ବଙ୍ଗ ପଶ୍ଚିମ ବଙ୍ଗ ସହିତ ମିଳିତ ହୋଇ ଜଣେ ଗଭର୍ଣ୍ଣରଙ୍କ ଅଧୀନ କରାଯାଇଥିଲା । ଆସାମ-ପ୍ରଦେଶ ଏକ ଚିଫ୍ କମିଶନରଙ୍କ ଅଧୀନ ରହିଲା । ବିହାର ଏବଂ

ଓଡ଼ିଶାକୁ ବଙ୍ଗପ୍ରଦେଶରୁ ବିଚ୍ଛିନ୍ନ କରିଯାଇ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଗଲା ଏବଂ ତାହା ଜଣେ ଲେଫ୍‌ଟେନାଣ୍ଟ ଗଭର୍ଣ୍ଣରଙ୍କ ଅଧୀନ ହେଲା, ଏବଂ ପୁରାତନ ପାଟଳିପୁତ୍ର ବା ପାଟନା ଏହି ନୂତନ ପ୍ରଦେଶର ରାଜଧାନୀ ହେଲା ।

ଦ୍ୱିତୀୟ ଲର୍ଡ଼ ହାର୍ଡ଼ିଞ୍ଜ—ସେ ୧୯୧୦ ଖ୍ରୀଷ୍ଟାବ୍ଦରେ ଭାରତକୁ ରାଜପ୍ରତିନିଧି ହୋଇ ଆସିଥିଲେ । ତାହାଙ୍କ ଶାସନକାଳରେ ପୂର୍ବୋକ୍ତ ଦିଲ୍ଲୀର ଦରବାର ହୋଇଥିଲା । ଲର୍ଡ଼ ହାର୍ଡ଼ିଞ୍ଜ ଭାରତର ବୈଷୟିକ ଓ ସାମାଜିକ ଉନ୍ନତି ପ୍ରତି ବିଶେଷ ମନୋନିବେଶ କରିଥିଲେ । ଦକ୍ଷିଣ ଆଫ୍ରିକାରେ ଭାରତୀୟ ପ୍ରଜାମାନଙ୍କ ଉପରେ ସେ ସ୍ଥାନର ଗଭର୍ଣ୍ଣମେଣ୍ଟ ଅନ୍ୟାୟ ବ୍ୟବହାର କରୁଥିବାରୁ ସେ ତାହା ରହିତ କରିବାଲାଗି ବିଶେଷ ଯତ୍ନ କରିଥିଲେ । ସେ ଏହି ଦେଶର ରାଜପ୍ରତିନିଧି ଥିବାବେଳେ ଦିଲ୍ଲୀଠାରେ କେତେକ ଦୁଷ୍ଟଲୋକ ତାହାଙ୍କ ଉପରେ ବୋମା ଫୋପାଡ଼ି ତାହାଙ୍କୁ ବଧ କରିବାର ଚେଷ୍ଟା କରିଥିଲେ, ଈଶ୍ୱରଙ୍କ କୃପାରୁ ସେହି ଚେଷ୍ଟା ବିଫଳ ହୋଇଥିଲା । ତାହାଙ୍କର ସ୍ତ୍ରୀବିୟୋଗ ଓ ଯୁଦ୍ଧରେ ପୁତ୍ରବିୟୋଗ ମଧ୍ୟ ଏହି ସମୟ ମଧ୍ୟରେ ଘଟିଥିଲା । ତଥାପି ସେ ତହିଁପ୍ରତି ଭ୍ରୂକ୍ଷେପ ନ କରି ଅବିଚଳିତଚିତ୍ତରେ ଭାରତ ପ୍ରତି ସ୍ନେହପୂର୍ଣ୍ଣ ହୃଦୟରେ ଶାସନକାର୍ଯ୍ୟ ଚଳାଇଥିଲେ । ଭାରତର ରାଜପ୍ରତିନିଧିମାନଙ୍କ ମଧ୍ୟରୁ ଦ୍ୱିତୀୟ ଲର୍ଡ଼ ହାର୍ଡ଼ିଞ୍ଜ ପ୍ରଥମେ ଓଡ଼ିଶାକୁ ଆଗମନ କରିଥିଲେ । ଓଡ଼ିଶାର ପ୍ରଜାମାନଙ୍କ ପ୍ରତି ତାହାଙ୍କ ଦୟାର ଏହା ଏକ ନିଦର୍ଶନ ।

୧୯୧୪ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ୪ ତାରିଖରେ ୟୁରୋପରେ ଏକ ଭୀଷଣ ମହାସମର ଆରମ୍ଭ ହୋଇଥିଲା । ତାହା ଅଦ୍ୟାବଧି ଚଳୁଅଛି । ଏଥିରେ ଜର୍ମ୍ମାନୀ ଅଷ୍ଟ୍ରିୟା ବୁଲଗେରିଆ ଏବଂ ତୁରଷ୍କ ଏହି ରାଜ୍ୟଗୁଡ଼ିକ ବ୍ରିଟେନ୍, ଫ୍ରାନ୍ସ, ରୁଷିଆ ଏବଂ ଇଟାଲୀର ଶତ୍ରୁ ହୋଇ ଯୁଦ୍ଧ ଚଳାଉଅଛନ୍ତି । ଆମେରିକା ଓ ପୃଥିବୀର ଅନ୍ୟାନ୍ୟ ଦେଶ ମଧ୍ୟ ଗ୍ରେଟ୍‌ବ୍ରିଟେନ ପ୍ରଭୃତି ସମ୍ମିଳିତ ଶକ୍ତିମାନଙ୍କ ସଙ୍ଗେ ଯୋଗଦେଇଅଛନ୍ତି । ଏହି ସମରର ବିଷୟ ଇତିହାସରେ ଲେଖିବାକୁ ଅଦ୍ୟାବଧି ସମୟ ହୋଇନାହିଁ ।

ଲର୍ଡ ହାର୍ଡିଞ୍ଜ ୧୯୧୬ ଖ୍ରୀଷ୍ଟାବ୍ଦରେ ବିଳାତକୁ ଫେରି ଯାଇଥିଲେ । ଏବଂ ଲର୍ଡ ଚେଲ୍‌ମସ୍‌ଫୋର୍ଡ ତାହାଙ୍କ ପଦରେ ନିଯୋଜିତ ହୋଇ ଇଂଲଣ୍ଡରୁ ଏ ଦେଶକୁ ଆଗମନ କରିଥିଲେ ।

---

## ବ୍ରିଟିଶୀୟ ଶାସନରେ ଭାରତର ଶ୍ରୀବୃଦ୍ଧି ।

ତୁଳନା—ପଠାଣ ଓ ମୋଗଲମାନଙ୍କର ରାଜତ୍ୱ ଇଂରେଜ ରାଜତ୍ୱ ସଙ୍ଗେ ତୁଳନୀୟ ନୁହେ । ସେମାନଙ୍କର ଶାସନକାର୍ଯ୍ୟରେ ଅନେକ ବିଶୃଙ୍ଖଳା ଥିଲା । ସେମାନଙ୍କ କର୍ମଚାରୀମାନେ ଆଇନର ଅଧୀନ ନ ଥିଲେ । ଅଧୁନାତନ ଯେପରି ଧନୀ, ନିର୍ଦ୍ଧନ, ରାଜା, ପ୍ରଜା, ଜମିଦାର, ରଇୟତ ସମସ୍ତଙ୍କ ପ୍ରତି ଏକ ଆଇନ ଓ ଏକ ବିଚାର, ସେମାନଙ୍କ ସମୟରେ ସେପରି ନ ଥିଲା । ଧନୀମାନେ ଓ ବ୍ୟବସାୟୀମାନେ ରାଜକର୍ମଚାରୀଙ୍କୁ ଦସ୍ୟୁ ସଦୃଶ ଭୟ କରି ନିଜ ନିଜ ଧନ ଗୋପନ କରି ରଖୁଥିଲେ । ମୁସଲମାନ୍‌ମାନଙ୍କ ସମୟରେ ଦେଶର ରାଜସ୍ୱ ସାଧାରଣ ହିତକର କାର୍ଯ୍ୟରେ ଯେତେ ଲାଗୁ ଥିଲା, ସମ୍ରାଟ, ନବାବ ପ୍ରଭୃତିଙ୍କ ବିଳାସରେ ତହିଁରୁ ବହୁ ବ୍ୟୟିତ ହେଉଥିଲା । ଶିକ୍ଷାବିସ୍ତାର ପ୍ରତି ମୁସଲମାନମାନଙ୍କର ଆଦୌ ଦୃଷ୍ଟି ନ ଥିଲା, ସେମାନଙ୍କ ରାଜତ୍ୱ ଅଦ୍ୟାପି ଥିଲେ ଭାରତ ଅଜ୍ଞାନ-ଅନ୍ଧକାରରେ ବୁଡ଼ିରହିଥାନ୍ତା ।

ଇଂରେଜ-ଶାସନକାଳରେ ସତୀଦାହ, ଗଙ୍ଗାସାଗରରେ ସନ୍ତାନ-ବିସର୍ଜନ, କନ୍ଧ ପ୍ରଭୃତି ଅସଭ୍ୟ ଜାତିମାନଙ୍କର ନରବଳିଦାନ ଇତ୍ୟାଦି କୁ-ପ୍ରଥାସବୁ ରହିତ ହୋଇଅଛି । ଚୋର ଡକାୟତ ପ୍ରଭୃତିଙ୍କର ଅତ୍ୟାଚାର ଆଉ ନାହିଁ । ଡାକ, ସଡ଼କ, ରେଲ, ଖାଲ, ତାରଡାକ ପ୍ରଭୃତିର ସୁବନ୍ଦୋବସ୍ତ ହେବାରୁ ଯାତାୟାତ, ସମ୍ବାଦପ୍ରେରଣ ଏବଂ ବାଣିଜ୍ୟ ବିସ୍ତାରର ସଙ୍ଗେ ସଙ୍ଗେ ଲୋକେ ଅନ୍ୟାନ୍ୟ ବହୁବିଧ ସୁବିଧା



ସତୀଦାହ ।

ମାନଅଛନ୍ତି । ବିଚାରାଳୟମାନଙ୍କରେ ନ୍ୟାୟ ବିଚାରଦ୍ୱାରା କେହି କାହାକୁ ଉପରେ ଅତ୍ୟାଚାର କରିପାରୁ ନାହିଁ । ବାଣିଜ୍ୟ ବାଧାରହିତ ହୋଇ ଥିବାରୁ ଦେଶର ଆର୍ଥିକ ଅବସ୍ଥାର ଉନ୍ନତି ହୋଇଅଛି । ବିଦ୍ୟାଳୟ-ମାନଙ୍କର ସ୍ଥାପନଦ୍ୱାରା ସାଧାରଣ ଶିକ୍ଷା କ୍ରମଶଃ ବୃଦ୍ଧି ପାଉଅଛି । ସମସ୍ତେ ନିଜ ନିଜ ମନୋଗତ ଭାବ ସ୍ୱାଧୀନଭାବରେ ବ୍ୟକ୍ତ କରିପାରୁଅଛନ୍ତି । ମୁଦ୍ରାଯନ୍ତ୍ର ସ୍ୱାଧୀନତା ପାଇଥିବାରୁ ପ୍ରଜାମାନଙ୍କ ମନର ଭାବ ରାଜକର୍ମ-ଚାରୀମାନେ ସହଜେ ବୁଝିପାରୁଅଛନ୍ତି । ଚା, କାଫି, ସିଙ୍କୋନା ପ୍ରଭୃତି ଅନେକପ୍ରକାର ନୂତନ ବୃକ୍ଷଲତା ଓ କୃଷିର ଉପଯୁକ୍ତ ପଦାର୍ଥ ଏ ଦେଶକୁ ନୂତନ ଆମଦାନି କରାଯାଇଅଛି । କାଗଜ, ସୂତା ଓ ଲୁଗା ପ୍ରଭୃତି ପ୍ରସ୍ତୁତ କରିବା ନିମନ୍ତେ କଳ କାରଖାନା ସ୍ଥାପିତ ହେବାରୁ ଅନେକ ଲୁପ୍ତ ବ୍ୟବସାୟର ପୁନରୁଦ୍ଧାର ହୋଇଅଛି । ଜମିଦାରମାନେ ରୟତମାନଙ୍କ ଉପରେ ପୂର୍ବପରି ଅତ୍ୟାଚାର କରିପାରୁ ନାହାନ୍ତି । ସେମାନଙ୍କର ଗଡ଼, ସୈନ୍ୟ ଏବଂ ବିଚାରାଳୟ ପ୍ରଭୃତି ରାଜଚିହ୍ନ ଆଉ ନାହିଁ । ମୂଳତଃ ଭାରତ ଏପରି ଏକ ଅପୂର୍ବ ଶାନ୍ତି ଭୋଗ କରୁଅଛି ଯେ

ସେ ବିଷୟ ଭାବିଲେ ପୁରାଣବର୍ଣ୍ଣିତ 'ରାମରାଜ୍ୟ' କଥା ମନେ ପଡ଼େ । ମୁସଲମାନ ବିଶେଷତଃ ମରହଟ୍ଟାମାନଙ୍କ ଅତ୍ୟାଚାରପରେ ଜଗଦୀଶ୍ୱର ଆମ୍ଭମାନଙ୍କୁ ଏକ ଅଖଣ୍ଡ ରାଜଚ୍ଛତ୍ରତଳେ ରଖି ଏହି ଯେଉଁ ନିରବଚ୍ଛିନ୍ନ ଶାନ୍ତି ପ୍ରଦାନ କରିଅଛନ୍ତି, ଯାହାଙ୍କ କୃପାବଳରୁ ଆମ୍ଭେମାନେ ବିଭିନ୍ନ ପ୍ରଦେଶରେ ବାସ କରୁଥିଲେହେଁ ଆପଣା ଆପଣାକୁ ଏକ ଭାରତୀୟ ମହାଜାତିର ଅନ୍ତର୍ଗତ ବୋଲି ମନେ କରୁଥାଉଁ ଏବଂ ଏକ ଅଦ୍ୱିତୀୟ ସାମ୍ରାଜ୍ୟର ଅଧିବାସୀ ବୋଲି ଆପଣାକୁ ଧନ୍ୟ ମଣୁଥାଉଁ ତାହାଙ୍କୁହିଁ ହୃଦୟର ଧନ୍ୟବାଦ ପ୍ରଦାନ କରିବା ଉଚିତ । ଯେଉଁ ସମ୍ରାଟଙ୍କ ଶାସନ-ଦ୍ୱାରା ଆମ୍ଭେମାନେ ଏତେ ସୁଖଶାନ୍ତି ଭୋଗ କରୁଥାଉଁ, ଆସ ତାହାଙ୍କ ଦୀର୍ଘଜୀବନ ଲାଗି ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିବା । ଆମ୍ଭମାନଙ୍କର ଈଶ୍ୱରଭକ୍ତି ତଥା ରାଜଭକ୍ତି ଚିରକାଳ ଅଟଳ ରହୁ ।

ଭାରତରେ ଶାନ୍ତି—ଇଂରେଜ ଗବର୍ଣ୍ଣମେଣ୍ଟ ଆମ୍ଭମାନଙ୍କର ଯେତେ ପ୍ରକାର ମଙ୍ଗଳ ସାଧନ କରିଅଛନ୍ତି ତନ୍ମଧ୍ୟରେ ସ୍ଥାୟୀ ଶାନ୍ତିଦାନହିଁ ପ୍ରଧାନ । ଦୃଢ଼ ଶାସନବ୍ୟତୀତ ସ୍ଥାୟୀ ଶାନ୍ତି ସମ୍ଭବପର ନୁହେ ଏବଂ ସାମ୍ରାଜ୍ୟ ଅତ୍ୟନ୍ତ ପରାକ୍ରମଶାଳୀ ନ ହେଲେ ଦୃଢ଼ଶାସନ ଅସମ୍ଭବ । ବର୍ତ୍ତମାନ ଶାନ୍ତି ବିରାଜମାନ ହେବାରୁ ପୂର୍ବର ଅତ୍ୟାଚାରମାନ ସ୍ୱପ୍ନବତ୍ ପ୍ରତୀୟମାନ ହେଉଅଛି । ବିଦେଶୀୟ ରାଜାମାନେ ଇଂରେଜ-ବାହାଦୁରଙ୍କୁ ଏପରି ମାନ୍ୟ ଓ ଭୟ କରନ୍ତି ଯେ ଆମ୍ଭେମାନେ ମାମୁଦ, ତୈମୁର ଓ ନାଦିରସାହ ପ୍ରଭୃତିଙ୍କ ପରି ଆକ୍ରମଣକାରୀମାନଙ୍କ ଭାରତରେ ଆଉ କେବେହେଁ ଦେଖିବାର ସମ୍ଭାବନା ନାହିଁ । ପୂର୍ବକାଳର ଡକାଇତି ଓ ହତ୍ୟାକାଣ୍ଡ ଗଲାଣି । ଆମ୍ଭମାନଙ୍କର ଶରୀର ଓ ସମ୍ପତ୍ତି ବର୍ତ୍ତମାନ ସମ୍ପୂର୍ଣ୍ଣରୂପେ ନିରାପଦ । ଠଗ, ପିଣ୍ଡାରି, ବର୍ଗିମାନଙ୍କର ଦର୍ପ ଗଲାଣି । ପାହାଡ଼ିଆ ଲୋକମାନଙ୍କର ଉପଦ୍ରବ ଆଉ ଲେଶମାତ୍ର ନାହିଁ । ଯେଉଁ

ବର୍ଗିମାନଙ୍କର କଥା କହି ପିତାମାତା ସନ୍ତାନମାନଙ୍କୁ ଡରାଉଥିଲେ ସେମାନଙ୍କର ଆଉ ଦେଖା ମିଳି ନାହିଁ ।

ଅନ୍ତର୍ବାଣିଜ୍ୟ ଓ ଶ୍ରମଜାତ ଦ୍ରବ୍ୟ ।—ଭାରତରେ ଶାନ୍ତି ସ୍ଥାପିତ ହେବାରୁ ଅନ୍ତର୍ବାଣିଜ୍ୟ ଓ ଶ୍ରମଜାତ ଦ୍ରବ୍ୟର ଉନ୍ନତି ବହୁପରିମାଣରେ ସାଧିତ ହୋଇଅଛି । ଇଉରୋପରୁ କଳପ୍ରସ୍ତୁତ ଦ୍ରବ୍ୟ ଆସିବାରୁ ଭାରତର ହସ୍ତପ୍ରସ୍ତୁତ ଦ୍ରବ୍ୟର ଅବନତି ଘଟିଅଛି ସତ୍ୟ, ମାତ୍ର ଇଂରେଜମାନଙ୍କର ଉଦ୍ୟମ ଓ ମୂଳଧନ ଦ୍ୱାରା ଏ ଦେଶର ଯେଉଁ ଦ୍ରବ୍ୟସମୂହ କେବେହେଁ ମନୁଷ୍ୟବ୍ୟବହାରରେ ଲାଗି ନ ଥାନ୍ତା ତାହା ମନୁଷ୍ୟର ବ୍ୟବହାରରେ ଲାଗିଅଛି । ଏ ଦେଶର ପଥରକୋଇଲା ଇଂରେଜ ମୂଳଧନ ଓ ଉଦ୍ୟମ ବ୍ୟତୀତ କେବେହେଁ ମନୁଷ୍ୟର ବ୍ୟବହାରରେ ଲାଗି ନ ଥାନ୍ତା । ତୁମ୍ଭେମାନେ ଯେଉଁ ସୂତାକଳ ଓ ଲୁଗାକଳ କଥା ଶୁଣ, ସେଗୁଡ଼ିକ କେବଳ ଇଂରେଜମାନଙ୍କ ଉଦ୍ୟମ ଓ ମୂଳଧନରେ ଏ ଦେଶରେ ସ୍ଥାପିତ ହୋଇଅଛି । ତଦ୍ୱାରା ଏ ଦେଶରେ ଲକ୍ଷ ଲକ୍ଷ ଲୋକ ପ୍ରତିପୋଷିତ ହେଉଅଛନ୍ତି । ଏକ ଚା ଫସଲ ଏ ଦେଶର ଅନେକ କୁଳକୁ ପୋଷୁଅଛି ; ଇଂରେଜମାନେହିଁ ଏ ଦେଶରେ ସେହି ଫସଲର ପ୍ରବର୍ତ୍ତକ ।

ଇଂରେଜ ଅମଳରେ ରେଲ ଓ ତାରଡାକ ଦ୍ୱାରା ଦେଶବିଦେଶକୁ ଯିବାଆସିବା ଓ ଖବରଦେବାର ଅତ୍ୟନ୍ତ ସୁବିଧା ହୋଇଥିବାରୁ ଅନ୍ତର୍ବାଣିଜ୍ୟ ଓ ଦେଶଜ ଦ୍ରବ୍ୟର ଉନ୍ନତି ବିଶେଷ ପରିମାଣରେ ସାଧିତ ହୋଇଅଛି । କଳଜାହାଜ ପ୍ରାୟ ସମସ୍ତ ସୁନାବ୍ୟ ନଦୀରେ ଯିବାଆସିବା କରୁଅଛି । ଏକପଇସିଆ ଡାକଟିକଟ ପ୍ରଚଳିତ ହେବାରୁ ଅତି ଗରିବ ଲୋକେ ସୁଦ୍ଧା ସେମାନଙ୍କ ଦୂରସ୍ଥିତ ବନ୍ଧୁ ଓ କୁଟୁମ୍ବମାନଙ୍କୁ ଖବର ଦେଇପାରୁଅଛନ୍ତି । ପ୍ରତ୍ୟେକ ବଡ଼ ଗ୍ରାମରେ

ଡାକଘର ବସିଅଛି । ଭାରତରେ ଏପରି କୌଣସି ବଡ଼ ନଗର ନାହିଁ, ଯେଉଁଠାକୁ ରେଲ ନାହିଁ କି ତାରଡାକ ନାହିଁ । ଲକ୍ଷ ଲକ୍ଷ ସଡ଼କ ଓ ରାସ୍ତା ନିର୍ମିତ ହେଲାଣି, ଅନେକ ନାଳ ଖୋଳାଗଲାଣି, ତେଣୁ ଭାରତରେ ଆଉ ଏପରି ସ୍ଥାନ ନାହିଁ ଯେଉଁଠାକୁ ଲୋକେ ସହଜେ ଯାଇ ନ ପାରିବେ ; କିମ୍ବା ଯେଉଁଠାରୁ ମାଲମସଲା ସହଜେ ଅନ୍ୟ ସ୍ଥାନକୁ ଆସି ନ ପାରେ । ଏହାର ସୁଫଳ ଏହି ହୋଇଅଛି ଯେ ସାମ୍ରାଜ୍ୟର କୌଣସି ସ୍ଥାନରେ ଉତ୍ପାତ ଆରମ୍ଭ ହେଲେ ଇଂରେଜସୈନ୍ୟ ତତ୍କ୍ଷଣାତ୍ ସେଠାକୁ ଯାଇ ତାହାର ଦମନ କରୁଅଛନ୍ତି । ଦୁର୍ଭିକ୍ଷ କିମ୍ବା କୌଣସି ଦୈବୀ ବିପଦ୍ ଉପସ୍ଥିତ ହେଲେ ତତ୍କ୍ଷଣାତ୍ ତାହାର ପ୍ରତିବିଧାନ ହୋଇପାରୁଅଛି । ଭାରତର ଭିନ୍ନ ଭିନ୍ନ ଜାତି ମିଳିତ ହୋଇ ଏକ ମହାଜାତିରେ ପରିଣତ ହେଉଅଛନ୍ତି । ଏହାହିଁ ଇଂରେଜସାମ୍ରାଜ୍ୟର ସର୍ବଶ୍ରେଷ୍ଠ ସୁଫଳ । ପଠାଣ, ମୋଗଲ, ରାଜପୁତ, ମରହଟ୍ଟା, ଶିଖ, ପାର୍ସି, ବଙ୍ଗାଳି, ବିହାରୀ ଓ ଓଡ଼ିଆ ଆଜକାଲି ବନ୍ଧୁ ଓ ପ୍ରତିବେଶୀ ପରି ପରସ୍ପରକୁ ଆଲିଙ୍ଗନ କରୁଅଛନ୍ତି ଏବଂ ଏକ ଅଖଣ୍ଡ ଛତ୍ରତଳେ ବାସ କରୁଥିବାରୁ ଆପଣା ଆପଣାକୁ ଗୌରବାନ୍ୱିତ ମଣୁଅଛନ୍ତି ।

ସ୍ୱାସ୍ଥ୍ୟ ।—ସ୍ୱାସ୍ଥ୍ୟ ଅମୂଲ୍ୟ ଧନ, ଏହା ଜାଣି ଇଂରେଜଗବର୍ଣ୍ଣମେଣ୍ଟ ଜନସାଧାରଣର ସ୍ୱାସ୍ଥ୍ୟ ସୁରକ୍ଷିତ ଓ ଉନ୍ନତ କରିବାଲାଗି ବିଶେଷ ଯତ୍ନବାନ୍ । ଅନେକ ବଡ଼ ବଡ଼ ସହରରେ ଜଳକଳ ବସିଅଛି । ରାସ୍ତା ଘାଟ ପରିଷ୍କାର କରିବାର ଓ ବର୍ଷାଜଳ ବାହାରିବାର ସୁବନ୍ଦୋବସ୍ତ ହୋଇଅଛି । ଆଧୁନିକ ବିଜ୍ଞାନାନୁସାରେ ଚିକିତ୍ସାବିଦ୍ୟା ଶିକ୍ଷା ଦେବାଲାଗି ଭାରତର ନାନା ସ୍ଥାନରେ ମେଡ଼ିକାଲ କଲେଜ ଓ ସ୍କୁଲମାନ ସ୍ଥାପିତ ହୋଇଅଛି । ହାସ୍ପାତାଲ ଓ ଦାତବ୍ୟ ଚିକିତ୍ସାଳୟ ସ୍ଥାପିତ ହୋଇ ଥିବାରୁ ଗରିବଲୋକଙ୍କର ବିଶେଷ ଉପକାର ସାଧିତ ହେଉଅଛି ।

ଇଂରେଜଭାଷା ।—ଇଂରେଜ ଶାସନ ଭାରତୀୟ ଲୋକମାନଙ୍କର ଯେଉଁ ନୈତିକ ଓ ମାନସିକ ଉନ୍ନତି ସାଧନ କରୁଅଛି, ତହିଁର ମୂଳ-କାରଣ ଇଂରେଜ-ଭାଷାଶିକ୍ଷା । ଇଂରେଜଭାଷା ଗୋଟିଏ ମହତ୍ତ୍ୱ ଭାଷା । ଏହାଦ୍ୱାରା ଆମ୍ଭେମାନେ ପାଶ୍ଚାତ୍ୟ ଦେଶର ଜ୍ଞାନଗରିମା ବୁଝିପାରୁଅଛୁ ଏବଂ ଆମ୍ଭମାନଙ୍କର ପ୍ରାଚୀନ ଭାଷାମାନ ଇଉରୋପ ଓ ଆମେରିକାର ମହତ୍ତ୍ୱ ଭାବମାନ ଗ୍ରହଣ କରି ଉନ୍ନତି ଲାଭ କରୁଅଛି । ଇଂରେଜଭାଷା ଶିକ୍ଷା କରି ଆଜି ଭାରତର ବିଭିନ୍ନ ଜାତିମାନେ ପରସ୍ପର ନିକଟରେ ମନୋଗତ ଭାବ ପ୍ରକାଶ କରିପାରୁଅଛନ୍ତି ; ଏହିପରି ଏକ ସାଧାରଣବୋଧଗମ୍ୟ ଭାଷାର ସର୍ବଦା ପ୍ରତ୍ୟକ୍ଷବରୁ ଅନୁଯାଏ ଏହା ସମ୍ଭବପର ହୋଇ ନ ଥିଲା ।

ଜନସାଧାରଣର ଶିକ୍ଷାଦାନ ।—ଜନସାଧାରଣଙ୍କୁ ଶିକ୍ଷା ଦାନ କରିବା ଇଂରେଜବାହାଦୁରଙ୍କର ଆଉ ଏକ ଅତି ମହତ୍ତ୍ୱ କାର୍ଯ୍ୟ । ସମସ୍ତେ ଜାତି-ଧର୍ମ-ନିର୍ବିଶେଷରେ ପାଠ ପଢ଼ିବାଲାଗି କଲେଜ ଓ ସ୍କୁଲମାନ ଭାରତର ସର୍ବତ୍ର ସ୍ଥାପିତ ହୋଇଅଛି । ଗ୍ରାମେ ୨ ପ୍ରାଥମିକ ବିଦ୍ୟା-ଳୟମାନ ସ୍ଥାପିତ ହେଲାଣି । ଏହି ହେତୁରୁ ଯେଉଁମାନଙ୍କର ଶିକ୍ଷା ପ୍ରାପ୍ତ ହେବା କଠିନ ହେଉଥିଲା ସେମାନେ ସୁଦ୍ଧା କିଛି ନା କିଛି ଲେଖା-ପଢ଼ା ଶିଖିପାରୁଅଛନ୍ତି । ଇଂରେଜଗବର୍ଣ୍ଣମେଣ୍ଟ କେବଳ ଜନସାଧାରଣଙ୍କୁ ଶିକ୍ଷା ଦେଇ ନିଶ୍ଚିନ୍ତ ନାହାନ୍ତି, ଲୁପ୍ତ ହେଉଥିବା ପ୍ରାଚୀନ ଗ୍ରନ୍ଥମାନଙ୍କର ଉଦ୍ଧାର ସାଧନ କରୁଅଛନ୍ତି । ଏଥିଲାଗି ଏସିୟାଟିକ ସୋସାଇଟୀ ସଦୃଶ ସମାଜମାନ ସ୍ଥାପିତ ହୋଇଅଛି ଏବଂ ସଂସ୍କୃତ ଓ ପାର୍ସି ପ୍ରଭୃତି ମୃତଭାଷାର ଉନ୍ନତି ନିମନ୍ତେ ବଡ଼ ବଡ଼ ବିଦ୍ୟାଳୟମାନ ସ୍ଥାପିତ ହୋଇଅଛି ।

ମୁଦ୍ରାଯନ୍ତ୍ର ।—ଜନସାଧାରଣଙ୍କୁ ଶିକ୍ଷା ଦେବା ସମ୍ବନ୍ଧରେ ଏକ ମୁଦ୍ରାଯନ୍ତ୍ର ଯେତେ ପରିମାଣରେ ସାହାଯ୍ୟ କରୁଅଛି, ଏପରି ଆଉ କୌଣସି

ବୈଜ୍ଞାନିକ ଉଦ୍ଭାବନ କରିପାରି ନାହିଁ । ଏହାଦ୍ୱାରା ଗରିବ ଲୋକମାନେ ଅଳ୍ପ ମୂଲ୍ୟରେ ଏବଂ ଅନାୟାସରେ ପୁସ୍ତକମାନ ପ୍ରାପ୍ତ ହେଉଅଛନ୍ତି । ମୁଦ୍ରାଯନ୍ତ୍ର ଖବରକାଗଜ ପ୍ରଚଳନର ମୂଳ କାରଣ । ଅଳ୍ପକାଳ ଖବରକାଗଜ ଏ ଦେଶକୁ ଏକ ନୂତନ ଶକ୍ତି ଆଣିଅଛି । ଏହାଦ୍ୱାରା ଅମ୍ଭେମାନେ ରାଜନୀତି ଶିଖିପାରୁଥାଉଁ, ଦେଶର ହାଲଚାଲ ଜାଣିପାରୁଥାଉଁ, ସମ୍ରାଜ୍ଞୀ ଅଥବା ସରକାରବାହାଦୁରଙ୍କୁ ଜଣାଇପାରୁଥାଉଁ ଏବଂ ଅମ୍ଭମାନଙ୍କର ନିଜ ନିଜ ଗୁହାରି ରାଜପୁରୁଷମାନଙ୍କ ନିକଟରେ ପ୍ରକାଶ କରି ପାରୁଅଛୁ । ସୁପରିଚାଳିତ ସମ୍ବାଦପତ୍ରର କ୍ଷମତା ଅସୀମ ଏବଂ ସାଧାରଣ ଲୋକଙ୍କୁ ଶିକ୍ଷିତ କରାଇବା ବିଷୟରେ ଏହା ଏକ ଅମୋଘ ଉପାୟ । ମୁଦ୍ରାଯନ୍ତ୍ର-ପ୍ରସାଦରୁହିଁ ଅମ୍ଭେମାନେ ଏହି ଉପାଦେୟ ବସ୍ତୁଟି ଏ ଦେଶରେ ପାଇଥାଉଁ ।

---

## ଶାସନ ପ୍ରଣାଳୀ ।

ବ୍ରିଟିଶୀୟ ଭାରତ ସାମ୍ରାଜ୍ୟ ଶାସନାର୍ଥ କେତେଗୋଟି ପ୍ରଦେଶରେ ବିଭକ୍ତ ହୋଇଅଛି । ପ୍ରତ୍ୟେକ ପ୍ରଦେଶରେ ଏକ ଏକ ଶାସନକର୍ତ୍ତା ଅଛନ୍ତି । ଏମାନଙ୍କ ମଧ୍ୟରୁ କାହାରିକୁ ଗବର୍ଣ୍ଣର, କାହାକୁ ଲେଫ୍ଟେନାଣ୍ଟ ଗବର୍ଣ୍ଣର, କାହାକୁ ଅବା ଚୀଫ୍‌କମିଶନର କୁହାଯାଏ । ଶାସିତ ପ୍ରଦେଶ ବଡ ସାନ ହେବା ଭେଦରେ ଶାସନକର୍ତ୍ତାମାନଙ୍କର ଏପରି ନାମକରଣ ହୋଇଅଛି । ବମ୍ବାଇ ଓ ମାନ୍ଦ୍ରାଜର ଶାସନକର୍ତ୍ତାମାନେ ବିଲାତରୁ ୫ ବର୍ଷ ସକାଶେ ଆସନ୍ତି, ଏମାନଙ୍କୁ ଗବର୍ଣ୍ଣର କୁହାଯାଏ । ବିହାର ଓ ଓଡ଼ିଶା, ଉତ୍ତରପଶ୍ଚିମ ପ୍ରଦେଶ, ପଞ୍ଜାବ ଏବଂ ବ୍ରହ୍ମଦେଶର ଶାସନକର୍ତ୍ତାମାନଙ୍କୁ ଲେଫ୍ଟେନାଣ୍ଟ ଗବର୍ଣ୍ଣର ବୋଲାଯାଏ । ମଧ୍ୟପ୍ରଦେଶ, ଅସାମ, ବେରାର, କୁର୍ଗ, ଅଜମିର, ବ୍ରିଟିଶବେଲୁଚିସ୍ଥାନ, ଆଣ୍ଡାମାନଦ୍ୱୀପପୁଞ୍ଜ ଆଉ ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶର ଶାସନକର୍ତ୍ତାମାନଙ୍କୁ ଚୀଫ୍-

କମିଶନର ବୋଲଯାଏ । ଏହିସବୁ ପ୍ରାଦେଶିକ ଶାସନକର୍ତ୍ତାମାନେ ଗବର୍ଣ୍ଣର ଜେନେରଲ ଏବଂ ଭାଇସ୍‌ରୟଙ୍କର ଅଧୀନ ଅଟନ୍ତି । ଭାଇସ୍‌ରୟ ବିଲାତରୁ ୫ ବର୍ଷ ସକାଶ ଆସନ୍ତି । ସେ ମଧ୍ୟ ଶାସନକାର୍ଯ୍ୟରେ ବିଲାତର ଭାରତସେକ୍ରେଟେରୀ ଓ ତାଙ୍କ ସଭାର ଅଧୀନ । ଭାରତସେକ୍ରେଟେରୀ ବ୍ରିଟିଶ-ଗବର୍ଣ୍ଣମେଣ୍ଟଙ୍କ ଦ୍ୱାରା ନିଯୋଜିତ ପାର୍ଲିମେଣ୍ଟ ସଭାର ଏକ ସଭ୍ୟ ଏବଂ ସେ ତାଙ୍କର କାର୍ଯ୍ୟଲାଗି ପାର୍ଲିମେଣ୍ଟମହାସଭା ନିକଟରେ ଦାୟୀ; ଏଣୁ ଜାଣିବାକୁ ହେବ ଯେ ଭାରତଶାସନ ବ୍ରିଟିଶଶାସନର ଏକ ଅଙ୍ଗମାତ୍ର ।

ଭାରତସଭା ଓ ପ୍ରାଦେଶିକ ସଭା—ଭାଇସ୍‌ରୟ ଓ ତାହାଙ୍କ ମନ୍ତ୍ରଣା-ସଭାକୁ ଭାରତଗବର୍ଣ୍ଣମେଣ୍ଟ କୁହାଯାଏ । ଏହି ସଭାର ସଭ୍ୟମାନେ ରାଜସ୍ୱ, ସମର, ଆଇନ ପ୍ରଭୃତି ବିଭାଗର କର୍ତ୍ତା ଅଟନ୍ତି । ଏହାଛଡ଼ା ବ୍ୟବସ୍ଥାପକ ସଭା ବୋଲି ସମୁଦାୟ ଭାରତ ନିମନ୍ତେ ଆଉ ଏକ ସଭା ଅଛି । ଏହା ଭାରତଗବର୍ଣ୍ଣମେଣ୍ଟଙ୍କ ମନ୍ତ୍ରିସମୂହ ଓ କେତେକ ସରକାରୀ କର୍ମଚାରୀ ଏବଂ ଦେଶୀୟ ଓ ଇଉରୋପୀୟ ସମାଜର ପ୍ରତିନିଧିସ୍ୱରୂପ କେତେକ ବେସରକାରୀ ସଭ୍ୟମାନଙ୍କ ଦ୍ୱାରା ଗଠିତ । ସମସ୍ତ ଭାରତବର୍ଷ ନିମନ୍ତେ ଆଇନ ପ୍ରସ୍ତୁତ କରିବା ଏହି ସଭାର କାର୍ଯ୍ୟ । ମାନ୍ଦ୍ରାଜ, ବମ୍ବେଇ, ପଞ୍ଜାବ, ଉତ୍ତରପଶ୍ଚିମ ପ୍ରଦେଶ, ବଙ୍ଗଳା, ମଧ୍ୟପ୍ରଦେଶ, ବ୍ରହ୍ମଦେଶ, ବିହାର ଓ ଓଡ଼ିଶା ଓ ଆସାମ ଲାଗି ମଧ୍ୟ ବ୍ୟବସ୍ଥାପକ ସଭାମାନ ଅଛି । ଏମାନେ ନିଜ ନିଜ ପ୍ରଦେଶ ସକାଶେ ଆଇନ ପ୍ରସ୍ତୁତ କରନ୍ତି । ଏହି ପ୍ରାଦେଶିକ ସଭାମାନଙ୍କ ଦ୍ୱାରା ପ୍ରଣୀତ ଆଇନସମୂହ ଚଳିବାଲାଗି ଭାରତଗବର୍ଣ୍ଣମେଣ୍ଟଙ୍କ ସମ୍ମତି ଆବଶ୍ୟକ ହୁଏ ।

କାର୍ଯ୍ୟକାରୀ ଓ ବିଚାରକ କର୍ମଚାରୀଗଣ—ପ୍ରତ୍ୟେକ ପ୍ରଦେଶ କେତେଗୁଡ଼ିଏ ଡିଷ୍ଟ୍ରିକ୍ଟରେ ବିଭକ୍ତ । ପ୍ରତ୍ୟେକ ଡିଷ୍ଟ୍ରିକ୍ଟରେ ଜଣେ ଲେଖାଏଁ ମାଜିଷ୍ଟ୍ରେଟ-କଲେକ୍ଟର ଓ କୌଣସି କୌଣସି ସ୍ଥାନରେ ଡେପୁଟି-

କମିଶନର ଅଛନ୍ତି । ଏମାନେ ରାଜସ୍ୱ ଆଦାୟ କରନ୍ତି ଏବଂ ରାଜସ୍ୱ ଓ ଫୌଜଦାରୀ ସଂକ୍ରାନ୍ତ ସମସ୍ତ ମକଦ୍ଦମା ବୁଝନ୍ତି । ଏହାଛଡ଼ା ଏମାନେ ନିଜ ଡିଷ୍ଟ୍ରିକ୍ଟରେ ଥିବା ପୁଲିସ୍, ପୂର୍ତ୍ତବିଭାଗ, ମ୍ୟୁନିସପାଲିଟି, ଶିକ୍ଷା ଓ ସ୍ୱାସ୍ଥ୍ୟ-ବିଭାଗର ତତ୍ତ୍ୱାବଧାରଣ କରନ୍ତି । ଏହିସବୁ ବିଭିନ୍ନ ପ୍ରକାର କାର୍ଯ୍ୟ ଲାଗି ଏମାନେ ଜଏଣ୍ଟ, ଆସିଷ୍ଟାଣ୍ଟ, ଡେପୁଟି ମାଜିଷ୍ଟ୍ରେଟ ପ୍ରଭୃତି ବଡ଼ ବଡ଼ କର୍ମ-ଚାରୀମାନଙ୍କଠାରୁ ଆରମ୍ଭ କରି ସାମାନ୍ୟ ଗ୍ରାମ୍ୟ ଚୌକିଦାର ପର୍ଯ୍ୟନ୍ତ ସମସ୍ତ କର୍ମଚାରୀଙ୍କଠାରୁ ସାହାଯ୍ୟ ପ୍ରାପ୍ତ ହୁଅନ୍ତି । କେତେଗୁଡ଼ିଏ ଡିଷ୍ଟ୍ରିକ୍ଟ ମିଶି ଏକ ଏକ ଡିଭିଜନ ଗଠିତ ହୋଇଅଛି । ପ୍ରତ୍ୟେକ ଡିଭିଜନରେ ଜଣେ ଲେଖାଏଁ କମିଶନର ଅଛନ୍ତି । ଆମ୍ଭମାନଙ୍କର ଓଡ଼ିଶା ଏକ ଡିଭି-ଜନ । ଏଥିରେ ଜଣେ କମିଶନର ଅଛନ୍ତି । ସେ କଟକରେ ଥାନ୍ତି ।

ଓଡ଼ିଶାବିଭାଗ ପାଞ୍ଚ ଜିଲ୍ଲାରେ ବିଭକ୍ତ, ଯଥା—କଟକ, ପୁରୀ, ବାଲେଶ୍ୱର, ଅନୁଗୁଳ ଓ ସମ୍ବଲପୁର । କଟକ, ପୁରୀ, ବାଲେଶ୍ୱରରେ ମାଜିଷ୍ଟ୍ରେଟ-କଲେକ୍ଟର ଏବଂ ସମ୍ବଲପୁର ଓ ଅନୁଗୁଳରେ ଡେପୁଟିକମିଶ-ନର ଅଛନ୍ତି । ଏହାଛଡ଼ା ଓଡ଼ିଶା ପାଇଁ ଜଣେ ଡିଷ୍ଟ୍ରିକ୍ଟ ଜଜ୍ ଅଛନ୍ତି ।

ଜଜ ଆଉ ମାଜିଷ୍ଟ୍ରେଟମାନେ ବିଚାରକାର୍ଯ୍ୟରେ ହାଇକୋର୍ଟ ବା ଚିଫ୍‌କୋର୍ଟର ଅଧୀନ । ହାଇକୋର୍ଟ ଓ ଚିଫ୍‌କୋର୍ଟର ଅପିଲ ବିଲାତର ପ୍ରିଭିକାଉନସିଲରେ ଶୁଣାଯାଏ । ଉକ୍ତ କାଉନସିଲର ନିଷ୍ପତ୍ତି ଚୂଡ଼ାନ୍ତ ଅଟେ ।

# ପରିଶିଷ୍ଟ ।

## ଇଉରୋପୀୟ ମହାସମର ।

୧ । ୧୯୧୪ ମସିହା ଅଗଷ୍ଟ ମାସରେ ଏହି ସମର ଆରମ୍ଭ ହୋଇଥିଲା । ଇଉରୋପରେ ଯେ ଗୋଟିଏ ମହାଯୁଦ୍ଧ ଘଟିବ, ଏହି ଜନରବ ଅନେକ ଦିନରୁ ଉଠିଥିଲା । ଜର୍ମାନୀ ବହୁକାଳରୁ ଇଉରୋପର କର୍ତ୍ତା ଏବଂ ପୃଥିବୀରେ ଏକ ମହାଶକ୍ତି ହେବାର ଇଚ୍ଛା କରି ଯେଉଁମାନେ ଏଥିରେ ତାହାଙ୍କୁ ବାଧା ଦେବେ ସେମାନଙ୍କର ବିନାଶସାଧନ ଲାଗି ସଙ୍କଳ୍ପ କରିଥିଲା । ତେଣୁ ଯେତେବେଳେ ଅଷ୍ଟ୍ରିଆ ଏବଂ ସର୍ବିଆ ମଧ୍ୟରେ ବିବାଦ ଉପସ୍ଥିତ ହେଲା, ଜର୍ମାନୀ ସେହି ବିବାଦରୁ ଆପଣାର ଚିରଅଭିଲଷିତ ସମର ଘଟାଇବା ନିମନ୍ତେ ଦୃଢ଼ପରିକର ହୋଇ ବସିଲା । ୧୮୭୨ ଖ୍ରୀଷ୍ଟାବ୍ଦରୁ ଅର୍ଥାତ୍ ଯେଉଁ ଦିନୁଁ ଜର୍ମାନୀ ଫ୍ରାନ୍ସକୁ ଜୟ କରି ତାହାଠାରୁ ଆଲ୍‌ସେସ୍ ଏବଂ ଲୋରେନ ପ୍ରଦେଶଦ୍ୱୟ ଛଡ଼ାଇ ନେଇଥିଲା ସେହି ଦିନୁଁ ସେ ଏହି ସମରର ଆୟୋଜନ କରି ଆସୁଥିଲା; ଅର୍ଥାତ୍ ଏହି ୪୨ ବର୍ଷବ୍ୟାପୀ କାଳ ମଧ୍ୟରେ ଜର୍ମାନ ଜାତି ଏକ ମହା ସାମରିକ ଜାତିରେ ପରିଣତ ହୋଇପାରିବା ଭଳି ଶିକ୍ଷା ଓ ଦୀକ୍ଷା ଲାଭ କରିଥିଲା । ଦେଶର ପୁରୁଷମାନେ ସୈନ୍ୟଶ୍ରେଣୀରେ ଭୁକ୍ତ ହୋଇ କିଛିକାଳ ଯୁଦ୍ଧଶିକ୍ଷା କରିବେ, ଏହି ନିୟମ ସେ ଦେଶରେ ସେହିଦିନୁଁ ପ୍ରଚଳିତ ହୋଇଥିଲା । ଏହି ପ୍ରଥାକୁ କନ୍‌ସ୍କ୍ରିପ୍‌ସନ୍ କହନ୍ତି । ଏପ୍ରକାର ନିୟମ-ପ୍ରବର୍ତ୍ତନର ଉଦ୍ଦେଶ୍ୟ ଏହି ଯେ, ଯେତେବେଳେ ଯୁଦ୍ଧ ଉପସ୍ଥିତ ହେବ ତେତେବେଳେ ପ୍ରତ୍ୟେକ ଜର୍ମାନ ପୁରୁଷ ସୈନିକକାର୍ଯ୍ୟ ଗ୍ରହଣ କରି ପାରିବ । ଏହିସବୁ କାରଣରୁ ଏହି ମହାସମରର ଆରମ୍ଭରେ ଜର୍ମାନୀ ଯେତେ ସୈନ୍ୟ ଯୁଦ୍ଧକୁ ପଠାଇପାରିଥିଲା ତହିଁର ସଂଖ୍ୟା ଇଉରୋପର ଯେ କୌଣସି ଦେଶର ସୈନ୍ୟସଂଖ୍ୟା ଅପେକ୍ଷା ଅଧିକ; ଏବଂ ଜର୍ମାନୀର

ସୈନ୍ୟମାନେ ଅନ୍ୟ ଯେକୌଣସି ଦେଶର ସୈନ୍ୟମାନଙ୍କ ଅପେକ୍ଷା ଯୁଦ୍ଧବିଦ୍ୟାରେ ଅଧିକତର ଶିକ୍ଷିତ ଓ ସୁସଜ୍ଜିତ ।

୨ । ଏହି ସମୟରେ ବ୍ରିଟିଶୀୟ ସେନାର ଅଳ୍ପତାକୁ ଲକ୍ଷ୍ୟ କରି ଜର୍ମାନୀର ସମ୍ରାଟ୍ ତାହାକୁ "ଅତି ଉପେକ୍ଷଣୀୟ କ୍ଷୁଦ୍ର ସେନା" ଆଖ୍ୟା ପ୍ରଦାନ କରିଥିଲେ । ମାତ୍ର ଶୀଘ୍ର ଏହି ଅବସ୍ଥାର ପରିବର୍ତ୍ତନ ଘଟିଥିଲା । ପ୍ରତ୍ୟହ ହଜାର ହଜାର ଲୋକ ସୈନ୍ୟଶ୍ରେଣୀରେ ଭୁକ୍ତ ହେବାକୁ ଲାଗିଲେ । ଖାଲି ବ୍ରିଟିଶୀୟ ଦ୍ୱୀପପୁଞ୍ଜର ଅଧିବାସୀ ନୁହନ୍ତି, ସମୁଦ୍ରର ଅପର ପାରରେ ଯେତେ ବ୍ରିଟିଶୀୟ ସାମ୍ରାଜ୍ୟଭୁକ୍ତ ରାଜ୍ୟ ଅଛି ସବୁ ରାଜ୍ୟରୁ ଅସଂଖ୍ୟ ଲୋକ ଇଚ୍ଛାପୂର୍ବକ ସୈନ୍ୟଶ୍ରେଣୀଭୁକ୍ତ ହୋଇଥିଲେ । ଭାରତବର୍ଷ ତାହାର ଶିଖ, ଗୁର୍ଖା, ରାଜପୁତ, ପଠାଣ ସୈନ୍ୟମାନଙ୍କୁ ବ୍ରିଟେନର ଶତ୍ରୁମାନଙ୍କ ବିରୁଦ୍ଧେ ସମ୍ମୁଖଭାଗରେ ଯୁଦ୍ଧ କରିବାକୁ ପଠାଇଲା । ସେହିପରି କାନାଡ଼ା, ଅଷ୍ଟ୍ରେଲିଆ ଏବଂ ନିଉଜିଲଣ୍ଡ ମଧ୍ୟ ନିଜ ନିଜର ସୈନ୍ୟ ଯୁଦ୍ଧକୁ ପଠାଇଥିଲେ । କ୍ରମେ ସୈନ୍ୟସଂଖ୍ୟା ବୃଦ୍ଧି କରିବାର ଏତେ ପ୍ରୟୋଜନ ପଡ଼ିଲା ଯେ, ଯୁଦ୍ଧ-ଗ୍ରହଣ-ଆଇନ ନାମରେ ଏକ ଆଇନ ବିଧିବଦ୍ଧ ହେଲା । ଏହି ଆଇନ ବଳରେ ଦେଶରେ ୧୮ ବର୍ଷରୁ ଅଧିକ ଓ ୪୧ ବର୍ଷରୁ ଊଣା ଯେତେ ପୁରୁଷ ଥିଲେ ସମସ୍ତେ ସୈନିକ ବିଭାଗରେ ଗ୍ରହଣ କରିବାକୁ ବାଧ୍ୟ ହୋଇଥିଲେ ; ଏବଂ ସେହି ପୁରୁଷମାନେ ଯୁଦ୍ଧ ପୂର୍ବରୁ ଦେଶରେ ଯେଉଁ ଯେଉଁ କାର୍ଯ୍ୟ ନିର୍ବାହ କରୁଥିଲେ ତହିଁଲାଗି ସ୍ତ୍ରୀଲୋକମାନେ ନିଯୁକ୍ତ ହୋଇଥିଲେ । ଏକ ପକ୍ଷରେ ଜର୍ମାନୀ, ଅଷ୍ଟ୍ରିଆ, ତୁରସ୍କ ଏବଂ ବୁଲ୍‌ଗେରିଆ ଏକତ୍ର ମିଳି ଯୁଦ୍ଧ କରିଥିଲେ, ଏବଂ ସେମାନଙ୍କୁ "କୈନ୍ଦ୍ରିକ ଶକ୍ତିପୁଞ୍ଜ," ଏହି ନାମ ଦିଆଯାଇଥିଲା । ଅନ୍ୟ ପକ୍ଷରେ ଫ୍ରାନ୍ସ, ରୁଷିଆ, ଇଟାଲୀ, ବେଲଜିଅମ୍, ସର୍ବିଆ, ବ୍ରିଟେନ ଏବଂ ଉତ୍ତରରେ ରୋମାନିଆ ଓ

ମଣ୍ଟିନେଗ୍ରୋ ଏକତ୍ର ମିଳି ଯୁଦ୍ଧ କରିଥିଲେ ଏବଂ ସେମାନଙ୍କୁ "ସମ୍ମିଳିତ ମିତ୍ରଶକ୍ତିପୁଞ୍ଜ" ଏହି ନାମ ଦିଆଯାଇଥିଲା ।

୭ । ଜର୍ମାନୀ ସର୍ବପ୍ରଥମେ ଫ୍ରାନ୍ସ ଆକ୍ରମଣ କରି ପାରିସନଗରୀ ପର୍ଯ୍ୟନ୍ତ ଯିବାଲାଗି ଉଦ୍ୟମ କରିଥିଲା ଏବଂ ଏହି ଉଦ୍ଦେଶ୍ୟ ପୂରଣ କରିବା ଲାଗି ତାହାକୁ ବେଲଜିଅମ୍ ମଧ୍ୟଦେଇ ସୈନ୍ୟ ଚଳାଇବା ସହଜ ବୋଲି ବୋଧ ହୋଇଥିଲା । ମାତ୍ର ବେଲଜିଅମ୍ ମଧ୍ୟଦେଇ ଯୁଦ୍ଧଯାତ୍ରା କରିବାର ଅଧିକାର ଜର୍ମାନୀର ନ ଥିଲା । ଏଥିପୂର୍ବରୁ ସେ ଏକ ସନ୍ଧିରେ ପ୍ରତିଶ୍ରୁତ ହୋଇଥିଲା ଯେ, ସେ ଉକ୍ତ ଦେଶ ମଧ୍ୟଦେଇ ଏପ୍ରକାର ଯୁଦ୍ଧଯାତ୍ରା କେବେହେଁ କରିପାରିବ ନାହିଁ । ମାତ୍ର ସେ ତାହାର ପ୍ରତିଶ୍ରୁତି ନ ରଖି ସୈନ୍ୟ ଘେନି ବେଲଜିଅମର ସୀମାନ୍ତ ପ୍ରଦେଶ ପାର ହେଲା । ତେଣୁ ବେଲଜିଅମ୍ ବାସୀମାନେ ଏହା ସହି ନ ପାରି ତାହାକୁ ବାଧା ଦେଲେ । ଏଥିରେ ବେଲଜିଅମର ରାଜା ସୈନ୍ୟାଧ୍ୟକ୍ଷର କାର୍ଯ୍ୟ କରିଥିଲେ । କିଛିକାଳ ଲାଗି ସେମାନେ ଜର୍ମାନୀର ଗତିରୋଧ କରିଥିଲେ ସତ୍ୟ, ମାତ୍ର ଏତେ କ୍ଷୁଦ୍ର ସେନା କି ସୁବିଶାଳ ଜର୍ମାନ୍ ସେନାର ଗତିରୋଧ କରିପାରେ ?

୪ । ଏଥିପୂର୍ବରୁ ବ୍ରିଟେନ ମଧ୍ୟ ପ୍ରତିଶ୍ରୁତ ହୋଇଥିଲା ଯେ, ସେ ବେଲଜିଅମ୍କୁ ତାହାର ଆପତ୍ତିକାଳରେ ରକ୍ଷା କରିବ । ସେହି କାରଣରୁ ଜର୍ମାନୀ ତାହାର ଅଙ୍ଗୀକାର ରକ୍ଷା ନ କରି ଏହି କ୍ଷୁଦ୍ରଦେଶ ମଧ୍ୟରେ ସୈନ୍ୟ ପ୍ରବେଶ କରାଇବା ମାତ୍ରେ ବ୍ରିଟେନ ଆପଣାର ଅଙ୍ଗୀକାର ରକ୍ଷାର୍ଥେ ଏହି ମହାଯୁଦ୍ଧରେ ପ୍ରବେଶ କଲା । ସରଜନ୍ ଫ୍ରେଞ୍ଚଙ୍କ ସେନା-ନାୟକତ୍ୱରେ ବ୍ରିଟେନୀୟ ସେନା ଇଂଲିଶ ଚ୍ୟାନେଲ ପାର ହୋଇ ଫରାସୀମାନଙ୍କୁ ସାହାଯ୍ୟ ଦେଇଥିଲେ । ବେଲଜିଅମର ସୀମାନ୍ତ ପ୍ରଦେଶରେ ମନ୍ସ ନାମକ ସ୍ଥାନରେ ଏକ ମହାଯୁଦ୍ଧ ହେଲା ଏବଂ

ଡର୍ହିରେ ବ୍ରିଟିଶୀୟ ସୈନ୍ୟମାନେ ପ୍ରାୟ ପରାସ୍ତ ହୋଇ ଯାଇଥିଲେ । ମାତ୍ର ଶେଷରେ ଜର୍ମାନମାନେ ବତାଡିତ ହୋଇଥିଲେ । ତତ୍ପରେ ପାରିସନଗରୀର ଅନ୍ତ ଦୂରବର୍ତ୍ତୀ ମାର୍ଣ୍ଣ ନାମକ ସ୍ଥାନରେ ଯୁଦ୍ଧ ହେଲା, ଏବଂ ଏଠାରେ ବ୍ରିଟିଶୀୟ ଓ ଫରାସୀ ସୈନ୍ୟମାନେ ଶତ୍ରୁକୁ ପରାସ୍ତ କରି ତାହାକୁ ତଡ଼ି ଦେଇଥିଲେ । ଅବଶେଷରେ ପାରିସଠାରୁ ପ୍ରାୟ ୬୦ ମାଇଲ୍ ଦୂରତାରେ ଶତ୍ରୁମାନେ ରହି ସୁଦୃଢ଼ ପରିଖାମାନ ଖୋଳି ଯୁଦ୍ଧ କରିବାର ଯତ୍ନ କଲେ । ଏହି ପରିଖାମାନ ଉତ୍ତର-ଦକ୍ଷିଣଭାବରେ ବିସ୍ତୃତ, ଏବଂ ଏହା ଉତ୍ତରସାଗରଠାରୁ ସ୍ୱିଟ୍ଜର୍‌ଲଣ୍ଡ ପର୍ଯ୍ୟନ୍ତ ଫ୍ରାନ୍ସ ଓ ବେଲ୍‌ଜିଅମ୍ ଦେଶମାନଙ୍କ ମଧ୍ୟରେ ଖୋଦିତ ହୋଇଥିବାରୁ ଏହି ଯୁଦ୍ଧରେଖାର ଦୈର୍ଘ୍ୟ ସହଜେ ଅନୁମିତ ହୋଇପାରିବ । ଏହା ଦେଖି ଫରାସୀ, ବ୍ରିଟିଶ୍ ଏବଂ ବେଲ୍‌ଜିଅନ୍‌ମାନେ ସୁଦୀର୍ଘ ଖାତମାନ ଖୋଳିଥିଲେ । ତତ୍ପରେ ଏହି ଖାତମାନଙ୍କ ମଧ୍ୟରେ ରହି ଦୀର୍ଘକାଳ ଘୋର ସମର ଚଳିଥିଲା ଏବଂ ଏକ ପକ୍ଷ ଅନ୍ୟ ପକ୍ଷକୁ ଆକ୍ରମଣ କରି ଖାତମାନ ଅଧିକାର କରିବା, ଲୋକମାନଙ୍କୁ ମାରିବା କିମ୍ବା କଏଦ କରିବାରେ ନିଯୁକ୍ତ ରହିଥିଲେ ।

୬ । ମାତ୍ର ଫ୍ରାନ୍ସର ଯୁଦ୍ଧ ସମଗ୍ର ସମର ନୁହେ । ଆଲପ୍ସ ପ୍ରଦେଶରେ ଇଟାଲୀୟମାନେ ଅଷ୍ଟ୍ରୀୟମାନଙ୍କ ସଙ୍ଗେ, ପୂର୍ବ ଇଉରୋପରେ ରୁଷୀୟମାନେ ଜର୍ମାନ ଓ ଅଷ୍ଟ୍ରୀୟମାନଙ୍କ ସଙ୍ଗେ ଯୁଦ୍ଧ କରୁଥିଲେ । ଡାର୍ଡାନେଲସରେ ବ୍ରିଟିଶୀୟ ଓ ଫରାସୀମାନେ ତୁରସ୍କୀୟମାନଙ୍କ ସଙ୍ଗେ ଯୁଦ୍ଧ କରି ଏହି ପ୍ରଣାଳୀ ବାଟେ ଯାଇ କନଷ୍ଟାଣ୍ଟିନୋପ୍ଲ ଅଧିକାର କରିବାର ଚେଷ୍ଟା କରିଥିଲେ । ତତ୍ପରେ ଜର୍ମାନ ଓ ଅଷ୍ଟ୍ରୀୟମାନେ ବୁଲ୍‌ଗେରୀୟମାନଙ୍କ ସାହାଯ୍ୟରେ କ୍ଷୁଦ୍ର ସର୍ବିଆ ରାଜ୍ୟକୁ ଆକ୍ରମଣ କରିଥିଲେ । ବ୍ରିଟିଶ୍ ଓ ଫ୍ରେଞ୍ଚ ସୈନ୍ୟମାନେ ସର୍ବୀୟମାନଙ୍କୁ ସାହାଯ୍ୟ କରିଥିଲେ । ମାତ୍ର ଶତ୍ରୁମାନେ ସର୍ବିଆକୁ ଏତେ ପ୍ରବଳ ଭାବରେ ଆକ୍ରମଣ କରିଥିଲେ

ଯେ, ଫରାସୀ ଓ ବ୍ରିଟିଶୀୟ ସୈନ୍ୟମାନଙ୍କୁ ସାଲୋନିକା ନାମକ ଗ୍ରୀସୀୟ ବନ୍ଦରକୁ ପଳାୟନ କରିବାକୁ ପଡ଼ିଥିଲା । ଦକ୍ଷିଣ ଆଫ୍ରିକାରେ ମଧ୍ୟ ଜର୍ମାନମାନଙ୍କ ସଙ୍ଗେ ଯୁଦ୍ଧ ଲାଗିଥିଲା । ମାତ୍ର ସେନାପତି ବୋଥା ସେଠାରେ ଜର୍ମାନମାନଙ୍କୁ ଏଡ଼େ ସୁକୌଶଳରେ ଆକ୍ରମଣ କରିଥିଲେ ଯେ, ବିପକ୍ଷୀୟ ସୈନ୍ୟମାନେ ସମସ୍ତେ ପରାସ୍ତ ହୋଇ କାରାରୁଦ୍ଧ ହୋଇଥିଲେ ।

୬ । ସ୍ୱଭାବତଃ ଯୁଦ୍ଧମାତ୍ରକେ ଅତି ଭୟାନକ ଏବଂ ତହିଁରେ ଅନେକ କ୍ରୂର କାର୍ଯ୍ୟ କରିବାକୁ ପଡ଼େ । ମାତ୍ର ଏହି ସମରରେ ଜର୍ମାନମାନେ ନିତାନ୍ତ ଅସଭ୍ୟ ଓ ବର୍ବର ଜାତିପରି ବ୍ୟବହାର କରିଥିବାରୁ ତାହା ଅତିଶୟରେ କ୍ରୂର ଓ ଭୟାବହ ହୋଇ ପଡିଥିଲା । ବେଲ୍‌ଜିଅମବାସୀମାନେ ଜର୍ମାନ ସେନାର ଗତିରୋଧ କରିଥିବାରୁ ତହିଁର ପ୍ରତିଶୋଧ ନେବାଲାଗି ଜର୍ମାନମାନେ ଯେପ୍ରକାର କାର୍ଯ୍ୟମାନ କରିଥିଲେ ତାହା ପୃଥିବୀର ଯାବତୀୟ ଜାତିମାନଙ୍କୁ ଅତି ଘୃଣାଜନକ ଓ ବିରକ୍ତିକର ବୋଧ ହୋଇଥିଲା । ଜର୍ମାନମାନେ ବେଲ୍‌ଜିଅମବାସୀ ଆବାଲବୃଦ୍ଧବନିତା ସମସ୍ତଙ୍କୁ ଏକ ଏକ ଘରେ ଭର୍ତ୍ତି କରି ତହିଁରେ ନିଆଁ ଲଗାଇ ଦେଉଥିଲେ ଏବଂ ନଗର ଓ ଗ୍ରାମମାନଙ୍କୁ ସମୂଳେ ବିଧ୍ୱସ୍ତ କରି ଦେଇଥିଲେ । ସେମାନେ ବଡ ବଡ ବନ୍ଧୁକ ଫଏର କରି ତହିଁର ଗୋଳାଦ୍ୱାରା ସୁଦୃଢ ଗୀର୍ଜାମାନ ଭାଙ୍ଗି ପକାଇଥିଲେ, ଏବଂ ତନ୍ମଧ୍ୟରେ ଥିବା ଇଉରୋପ ଖଣ୍ଡରେ ବହୁଶତ ବର୍ଷରୁ ପ୍ରଶଂସିତ କଳାବିଦ୍ୟାର ପରାକାଷ୍ଠାଦ୍ୟୋତକ କାର୍ଯ୍ୟମାନ ଛାରଖାର ହୋଇଯାଇଥିଲା । ଲୋବେନ ନାମକ ଯେଉଁ ନଗର ବେଲ୍‌ଜିଅମ୍ ମଧ୍ୟରେ ଅତି ସୁନ୍ଦର ତାହା ଭସ୍ମୀଭୂତ ହୋଇଥିଲା । ଏହିସବୁ ସ୍ଥାନର ଅଧିବାସୀମାନେ ପ୍ରାଣ ଘେନି ପଳାଇଥିଲେ, ଏବଂ ତନ୍ମଧ୍ୟରେ ଅନେକେ ବ୍ରିଟେନକୁ ପଳାଇଯାଇ ସମର ଶେଷ ହେବା ପର୍ଯ୍ୟନ୍ତ ସେଠାରେ ବାସ କରି ରହିଥିଲେ । ଯେତେବେଳେ

ଜର୍ମାନମାନେ ଉତ୍ତର ଫ୍ରାନ୍ସରେ ଉପସ୍ଥିତ ହୋଇଥିଲେ ତେତେବେଳେ ସେଠାରେ ମଧ୍ୟ ସେହିପରି କ୍ରୂରକାର୍ଯ୍ୟମାନ ସଂଘଟିତ ହୋଇଥିଲା । ସ୍ଥୂଳତଃ ସେମାନଙ୍କର ସୈନ୍ୟମାନଙ୍କର ଗମନମାର୍ଗ ବିଧ୍ୱସ୍ତ ଗ୍ରାମନଗର ଓ ପାଶବିକ ଅତ୍ୟାଚାରରେ ପୂର୍ଣ୍ଣ ହୋଇଥିଲା । ଏବଂ ଏହାର ଫଳରେ ସମସ୍ତ ପୃଥିବୀ ଭୟ, ଘୃଣା ଏବଂ ଅସନ୍ତୋଷରେ ପୂରିଯାଇଥିଲା ।



ଲର୍ଡ୍ କିଚେନର୍ ।

୭ । ଜର୍ମାନୀର ଏକ ପ୍ରଧାନ ଇଚ୍ଛା ଥିଲା ଯେ, ସେ ଇଂଲଣ୍ଡରେ ପ୍ରବେଶ କରିବ । ଫ୍ଲାଣ୍ଡର୍ସରେ ତାହାର ସୈନ୍ୟମାନେ ଅଦମ୍ୟ ଉତ୍ସା-

ହରେ ଯୁଦ୍ଧ କରି, ବ୍ରିଟିଶ୍ ସୈନ୍ୟଶ୍ରେଣୀ ଭଙ୍ଗ କରି କାଲେ ନଗରରେ ପହୁଞ୍ଚିବାକୁ ଚେଷ୍ଟା କରୁଥିଲେ, ମାତ୍ର ଏହି ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ ବିଫଳ ହୋଇଥିଲା । କାଲେ ନଗରରେ ଜର୍ମ୍ମାନସୈନ୍ୟ ପହୁଞ୍ଚିଥିଲେ ସୁଦ୍ଧା ଜର୍ମ୍ମାନୀର ଉଦ୍ଦେଶ୍ୟ ସଫଳ ହୋଇ ନ ଥାନ୍ତା, କାରଣ ଇଂଲଣ୍ଡର ନୌବହର ଏପରି ଭାବରେ ସ୍ୱଦେଶକୁ ଜଗିରହିଥିଲେ ଯେ, ଜର୍ମ୍ମାନୀର ସୈନ୍ୟମାନେ ସେ ଦେଶରେ ଯେଉଁ ୨ ମାର୍ଗରେ ପ୍ରବେଶଲାଭ କରି-ଥାନ୍ତେ ସେଗୁଡ଼ିକ ସମ୍ପୂର୍ଣ୍ଣ ରୁଦ୍ଧ ହୋଇଥିଲା । ଏପରି ଅବସ୍ଥାରେ ଜର୍ମ୍ମାନୀ ତାହାର ନୌବହରକୁ ଯେନ କିଛିହିଁ କରିପାରି ନ ଥାନ୍ତା । ମାତ୍ର ଜଟଲାଣ୍ଡର ଜଳଯୁଦ୍ଧରେ ଉକ୍ତ ନୌସେନା ସମ୍ପୂର୍ଣ୍ଣ ପରାଜିତ ହୋଇଥିଲା । ପାଣି ଭିତରେ ବୁଡ଼ି ଯେଉଁ ଜାହାଜ ଯାଏ ତାକୁ ବୁଡ଼ା ଜାହାଜ କହନ୍ତି । ଏହି ଜାହାଜମାନ ଟର୍ପେଡୋ ଅସ୍ତ୍ର ପେଷି ଅନ୍ୟାନ୍ୟ ଜାହାଜମାନଙ୍କୁ ନଷ୍ଟ କରେ । ଜର୍ମ୍ମାନୀ କହୁଥିଲା ଯେ, ସେ ତାହାର ବୁଡ଼ା ଜାହାଜ ପେଷି ଇଂଲଣ୍ଡର ସବୁ ଜାହାଜ ନଷ୍ଟ କରିଦେବ, ତାହା ହେଲେ ଇଂଲଣ୍ଡରେ କୌଣସି ପ୍ରକାର ଖାଦ୍ୟ ପ୍ରବେଶଲାଭ କରି ପାରିବ ନାହିଁ । ଏହି ଉଦ୍ଦେଶ୍ୟରେ ଜର୍ମ୍ମାନୀ ତାହାର ଶତ ଶତ ବୁଡ଼ା-ଜାହାଜ ସମୁଦ୍ରରେ ଚଳାଉଥିଲା ଏବଂ ଗୁପ୍ତଭାବେ ସମୁଦ୍ର ଗର୍ଭରେ ମାଇନ ପକାଇ ବ୍ରିଟିଶ୍ ଜାହାଜମାନ ଭାଙ୍ଗିବାକୁ ବସିଥିଲା । ବାସ୍ତବିକ ଏହି ଉପାୟ ଅବଲମ୍ବନ କରି ଜର୍ମ୍ମାନୀ ଭୟାନକ କାର୍ଯ୍ୟମାନ ସଂଘଟନ କରିଥିଲା । କି ବାଣିଜ୍ୟ ଜାହାଜ, କି ମାଛମରା ଜାହାଜ, କି ଯାତ୍ରୀ ଜାହାଜ, ଏପରିକି ରେଡ୍‌କ୍ରସ୍ ଜାହାଜ ସୁଦ୍ଧା, ଯାହାକି ହତାହତ ସୈନ୍ୟ ଏବଂ ଶୁଶ୍ରୂଷା-କାରିଣୀ ସ୍ତ୍ରୀମାନଙ୍କୁ ଯେନ ଯୁଦ୍ଧ ସ୍ଥଳମାନଙ୍କୁ ଯାଉଥିଲା, ସେମାନଙ୍କ ମଧ୍ୟରୁ କେହି ହେଲେ ବୁଡ଼ାଜାହାଜର ଉପ-ଦ୍ରବରୁ ରକ୍ଷା ପାଉ ନ ଥିଲେ । ମୁହୂର୍ତ୍ତକ ଆଗରୁ କାହାରିକୁ କିଛିହିଁ ନ ଜଣାଇ ଜର୍ମ୍ମାନୀ ଯେଉଁ ଜାହାଜକୁ ଦେଖେ ତାହାକୁ ବୁଡ଼ାଇ

ଦେଉଥାଏ, ଏବଂ ତହିଁରେ ଥିବା ଲୋକମାନେ ସମୁଦ୍ରରେ ବୁଡ଼ି ଜୀବନ ହରାଉଥାନ୍ତି । ବ୍ରିଟିଶ୍ ସମର-ସଚିବ କିଚ୍‌ନର୍ ସାହେବ ଆୟାରଲଣ୍ଡ ନିକଟବର୍ତ୍ତୀ ସମୁଦ୍ରରେ ନିଜ ଅନୁଚର ଓ ସଙ୍ଗୀମାନଙ୍କ ସହ ଏହିପରି ଭାବରେ ଜୀବନ ହରାଇଥିଲେ । ବ୍ରିଟିଶ୍ ନୌବହର ଏବଂ ନାବିକମାନେ ଏହି ଆପଦର ନିବାରଣ ଲାଗି ଯେପରି ସ୍ୱାର୍ଥତ୍ୟାଗ ଓ ବଦାନ୍ୟତା ଦେଖାଉଅଛନ୍ତି ତାହା ବର୍ଣ୍ଣନାତୀତ । କି ଦିନ, କି ରାତି, ସେମାନେ ସମୁଦ୍ରରେ ପହରା ଦେଇ ଗୋଟି ଗୋଟି କରି ଏହି ବୁଡ଼ା ଜାହାଜମାନ ଖୋଜି ନଷ୍ଟ କରୁଥାନ୍ତି, ଏବଂ ଜର୍ମାନମାନଙ୍କ ଚତୁରତାକୁ ଏଡ଼ାଇବା ଲାଗି ନାନାପ୍ରକାର କୌଶଳ ଅବଲମ୍ବନ କରୁଥାନ୍ତି ।



ଆକାଶ-ବିମାନ ।

୮ । ଆକାଶପଥରେ ବରାବର ଆକ୍ରମଣ ଚଳୁଥାଏ । ଜର୍ମାନୀର ଜେପେଲିନ୍ ଏବଂ ଏରୋପ୍ଲେନ୍ (ଆକାଶବିମାନ) ମାନ ବ୍ରିଟେନ୍ ଉପରକୁ ଉଡିଆସି, ଗ୍ରାମ ଓ ନଗରମାନଙ୍କ ଉପରେ ବୋମା ନିକ୍ଷେପ କରି ଅନେକ ଅଟ୍ଟାଳିକା ଓ ଗୃହ ଭାଙ୍ଗୁଥିଲେ ଏବଂ ଅନେକ ଲୋକ ଓ

ସମ୍ପତ୍ତି ନଷ୍ଟ କରଥିଲେ । ଏହି ଆକାଶ-ଯୁଦ୍ଧମାନ ମହା ଭୟଙ୍କର, ଏବ ଅନେକ ଏରୋପ୍ଲେନ୍ ଏହି ସମରରେ ନିଯୁକ୍ତ ଥିଲେ ।

୯ । ସମରର ଦ୍ୱିତୀୟ ବର୍ଷରେ ଜର୍ମାନୀ ବରୁଦ୍ଧରେ ବ୍ଲକେଡ୍ ଘୋଷଣା କରାଯାଇଥିଲା । ଏତଦ୍ଦ୍ୱାରା ଖାଦ୍ୟଦ୍ରବ୍ୟ ଏବ ଅନ୍ୟାନ୍ୟ ପ୍ରୟୋଜନୀୟ ପଦାର୍ଥମାନ ବଦେଶରୁ ଜର୍ମାନୀରେ ଆମଦାନ ହେବାର ବନ୍ଦ କରାଯାଇଥିଲା । ଯୁଦ୍ଧ ଶୀଘ୍ର ବନ୍ଦ ହେବା ବଷୟରେ ଏହି କାର୍ଯ୍ୟଟି ବହୁତ ସାହାଯ୍ୟ କରଥିଲା, ନତୁବା ଯୁଦ୍ଧ ବହୁକାଳ ଲାଗି ରହିଥାନ୍ତା ; କାରଣ ଯୁଦ୍ଧ ଚଳାଇବାଲାଗି ବନ୍ଧୁକ ଓ ବାରୁଦ ପ୍ରସ୍ତୁତ କରବା ସକାଶେ ଯେଉଁ ସବୁ ଉପାଦାନ ଆବଶ୍ୟକ, ବ୍ଲକେଡ଼ ହେତୁରୁ ସେଗୁଡ଼ିକ ଜର୍ମାନୀ ଭିତରକୁ ଆଉ ଯାଇ ପାରଲା ନାହିଁ । ଯୁଦ୍ଧ ଚାଲୁଥିବା କାଳରେ ଇଉରୋପର ପ୍ରତ୍ୟେକ ଦେଶରେ ଖାଦ୍ୟଦ୍ରବ୍ୟର ଅଭାବ ବଶେଷଭାବରେ ପଡ଼ିଥିଲା, ଏମନ୍ତ କ ଅନେକ ଦେଶର ଗରବ ଲୋକେ କିଛିହିଁ ଖାଇବାକୁ ପାଇଲେ ନାହିଁ । ଟଙ୍କା ଦେଲେହେଁ ଯାହାର ଯେତେ ମାଂସ, ମକ୍ଷନ ଓ ଅନ୍ୟାନ୍ୟ ଖାଦ୍ୟଦ୍ରବ୍ୟ କଣିବାକୁ ଇଚ୍ଛା ଟୁସ ତାହା ପାଇଲା ନାହିଁ । ପ୍ରତ୍ୟେକ ଖାଦ୍ୟ ପଡ଼ିକାଠ ହୋଇ ଦିଆଯାଉଥିଲା, ଅର୍ଥାତ୍ ପ୍ରତ୍ୟେକ ଲୋକକୁ ଯେଉଁ ଖାଦ୍ୟ ଯେତେ ପରମାଣରେ କଣିବାକୁ ଦେବାଲାଗି ସରକାର ନରଖ ବାନ୍ଧିଥିଲେ, ତହିଁରୁ ଅଧିକ ଖାଦ୍ୟ କେହି କଣିବାକୁ ପାଉ ନ ଥିଲେ । ପଶୁମାନଙ୍କୁ ସୁଦ୍ଧା ନରେଖବନ୍ଧା ରେଟରେ ଖାଇବାଲାଗି ଖାଦ୍ୟ ଦିଆଯାଉଥିଲା ।

୧୦ । ସମରର ଚତୁର୍ଥ ବର୍ଷ ଆମେରକା ସମ୍ମିଳିତ ମିତ୍ରଶକ୍ତିମାନଙ୍କ ସଙ୍ଗେ ଯୁଦ୍ଧରେ ଯୋଗ ଦେଇଥିଲା । ଆମେରକାର ସୈନ୍ୟମାନେ ଇଉରୋପକୁ ଆସି ଯୁଦ୍ଧ କରବାରୁ ଜର୍ମାନମାନେ ବଶେଷ ବପନ୍ନ ହେଲେ ଏବ ମିତ୍ରଶକ୍ତିର ସୈନ୍ୟମାନେ ଉତ୍ସାହିତ ହୋଇଥିଲେ । ସମରର

ଶେଷ କେତେକ ମାସ ମଧ୍ୟରେ ଆମେରିକାର ସୈନ୍ୟମାନେ ମହତ୍ୱ କାର୍ଯ୍ୟମାନ ସାଧନ କରିଥିଲେ ।

୧୧ । ସନ ୧୯୧୮ ସାଲ ମାର୍ଚ୍ଚମାସରେ ଇଂଲଣ୍ଡରେ ସମ୍ବାଦ ପହୁଞ୍ଚିଲା ଯେ, ଫ୍ରାନ୍ସରେ ଇଂରେଜ ସୈନ୍ୟର ସଂଖ୍ୟା ଅତି ଅଳ୍ପ ଏବଂ ଜର୍ମାନ ସୈନ୍ୟର ସଂଖ୍ୟା ଅତି ଅଧିକ । ସେନାପତି ସର୍ ଡଗ୍ଲାସହେଗ୍ ଯୁଦ୍ଧକ୍ଷେତ୍ରରୁ ଯେଉଁ ସମ୍ବାଦ ଦେଲେ ତହିଁରୁ ବୋଧ ହେଲା ପ୍ରାଣ ଯିବା ଯାଏ ଯୁଦ୍ଧ ନ କଲେ ଅନ୍ୟ କିଛି ଉପାୟ ନାହିଁ । କେତେକ କହିଲେ ଯୁଦ୍ଧ ସରିବ, ମାତ୍ର ସମ୍ମିଳିତ ଶକ୍ତିମାନେ ପରାସ୍ତ ହେବେ । ପ୍ରକୃତରେ ସମସ୍ତେ ବଡ଼ ଦୁଃଖିତ ହେଲେ । କିନ୍ତୁ ପ୍ରାଣ ଥିବା ଯାଏ ପ୍ରକୃତ ବ୍ରିଟେନବାସୀର ହୃଦୟ କି ସାହସହୀନ ହୁଏ ? ସେମାନେ ଦୃଢଭାବରେ ଯୁଦ୍ଧ କରିବାକୁ ଲାଗିଲେ ।

ଫ୍ରାନ୍ସର ଯୁଦ୍ଧକ୍ଷେତ୍ରରେ ପ୍ରତ୍ୟହ ହଜାର ହଜାର ବ୍ରିଟିଶୀୟ ସୈନ୍ୟ ମୃତ୍ୟୁମୁଖରେ ପଡ଼ୁଥିଲେ । ଏହିପରି ଯୁଦ୍ଧ ଲାଗିଥାଏ । ଜର୍ମାନମାନେ ଅତିଥରେ ପାରିସନଗରୀକୁ ଅଗ୍ରସର ହେଲେ । ୧୯୧୮ ମସିହା ଜୁଲାଇ ମାସ ୧୯ ତାରିଖ ଦିନ ସେମାନେ ଏହି ଚେଷ୍ଟା କରିଥିଲେ । ଏହାହିଁ ସେମାନଙ୍କର ଶେଷ ଚେଷ୍ଟା । ସେମାନେ ମାର୍ନ ନଦୀର ଉଭୟପାର୍ଶ୍ୱ ଆକ୍ରମଣ କରି ମାର୍ଣ୍ଣ ପାର ହୋଇ ପାରିସନଗରୀର ଏତେ ନିକଟକୁ ଆସିଥିଲେ ଯେ, ଦେଢ଼ଘଣ୍ଟାକାଳ ମଟରଗାଡ଼ିରେ ଚଢ଼ିଗଲେ ଉକ୍ତ ନଗରୀରେ ପହୁଞ୍ଚି ପାରିଥାନ୍ତେ । ତେତେବେଳେ ସମ୍ମିଳିତ ମିତ୍ର-ଶକ୍ତିର ପ୍ରଧାନ ସେନାପତି ଜେନେରାଲ୍ ଫକ୍ ସେମାନଙ୍କର ଅଗ୍ରଗତି ଅବରୋଧ କରି ପଛକୁ ହଟାଇ ଦେଲେ । ଜର୍ମାନମାନେ ଅଗେ ଅଗେ ପଳାଉଥାନ୍ତି, ସମ୍ମିଳିତ ଶକ୍ତିର ସୈନ୍ୟମାନେ ସେମାନଙ୍କୁ ଅନୁଧାବନ କରି ଏକ ଖାତ ଉପରେ ଅନ୍ୟ ଖାତ ଅଧିକାର କରୁ କରୁ ଶେଷରେ

ସେମାନଙ୍କ ଦେଶ-ସୀମାର ଅତି ନିକଟବର୍ତ୍ତୀ ହୋଇପଡ଼ିଥିଲେ । ସେତେବେଳେ ଜର୍ମାନମାନେ କିଛିକାଳ ଲାଗି ଯୁଦ୍ଧ ସ୍ଥଗିତ ରଖିବାକୁ ଚାହିଁଥିଲେ । ସେମାନେ ଦେଖିଲେ ସବୁ ହରାଇଥାନ୍ତି, ଆଉ କିଛି ନାହିଁ । ୧୯୧୮ ନଭେମ୍ବର ୧୧ ତାରିଖରେ ଶାନ୍ତିଶବ୍ଦ ଉଚ୍ଚାରିତ ହେଲା । ଏହା ପୃଥିବୀବାସୀ ସମସ୍ତଙ୍କୁ ମହାଆନନ୍ଦରେ ନିମଜ୍ଜିତ କରିଥିଲା । ସମସ୍ତେ ଈଶ୍ୱରଙ୍କୁ ଧନ୍ୟବାଦ ପ୍ରଦାନ କରିଥିଲେ ।

୧୨ । ୧୯୧୮ ନଭେମ୍ବର ଏବଂ ୧୯୧୯ ଜୁନ୍, ଏଥି ମଧ୍ୟରେ ପାରିସ-ନଗରୀରେ ଏକ ମହା ସନ୍ଧିସଭାର ବୈଠକ ବସିଲା । ତହିଁରେ ପୃଥିବୀର ପ୍ରତ୍ୟେକ ଯୁଦ୍ଧବ୍ୟାପୃତ ଦେଶର ପ୍ରତିନିଧି ଯୋଗଦାନ କରିଥିଲେ । ଭାରତବର୍ଷ ପକ୍ଷରୁ ଷ୍ଟେଟସେକ୍ରେଟେରୀ ମଣ୍ଟେଗୁ ସାହେବ ଏବଂ ଲର୍ଡ଼ ସିଂହ ଏଥିରେ ଯୋଗ ଦେଇଥିଲେ । ଆମେରିକାର ପ୍ରେସିଡେଣ୍ଟ ଉଇଲ୍‌ସନ୍ ସାହେବଙ୍କ ପରାମର୍ଶରେ ସନ୍ଧିସର୍ତ୍ତ ସ୍ଥିର ହୋଇଥିଲା । ସେମାନେ ଶାନ୍ତିର ସର୍ତ୍ତ ସ୍ଥିର କରିବାଲାଗି ଅତ୍ୟନ୍ତ ମିଳିତ ହେଉଥାନ୍ତି । ପୃଥିବୀ ଯୁଦ୍ଧ ହେତୁରୁ ମହା କ୍ଳାନ୍ତ ହୋଇ ପଡ଼ିଥିବାରୁ ସମସ୍ତେ ଚାହୁଁଥିଲେ ଏପରି ଏକ ଶାନ୍ତି ସ୍ଥାପିତ ହେଉ, ଯାହା ପ୍ରକୃତ ଶାନ୍ତି ଏବଂ ଯଦ୍ୱାରା ପୃଥିବୀର ଜାତିମାନଙ୍କ ମଧ୍ୟରେ ଏକ ଦୃଢ଼ ବନ୍ଧନ ସଂସ୍ଥାପିତ ହେଉ । ତାହାହିଁ ହେଲା । ଯେଉଁ ଜାତିମାନେ ଏହି ବନ୍ଧନରେ ଯୋଗ ଦେଲେ ସେମାନେ କ୍ଷୁଦ୍ର-ଜାତିମାନଙ୍କୁ ଆଶ୍ରୟ ଦେବା ଓ ସାହାଯ୍ୟ କରିବାର ଭାର ବହନ କଲେ । ବିଭିନ୍ନ ଜାତି ମଧ୍ୟରେ ବିବାଦ ହେଲେ ସେମାନେ ତାହାସବୁ ବୁଝି ଏପରିଭାବରେ ନିଷ୍ପତ୍ତି କରିଦେବାର ଭାର ନେଲେ, ଯେପରି କି ଆଉ ଯୁଦ୍ଧ ହେବ ନାହିଁ ।

ଏହି ମହାସମର ଆମ୍ଭମାନଙ୍କୁ ଅନେକ ଶିକ୍ଷା ଦେଇଅଛି । ଆମ୍ଭମାନଙ୍କ ମନରେ ଭବିଷ୍ୟତ ଲାଗି ନୂତନ ନୂତନ ଭାବ ଓ ନୂତନ

ଅଣ ର ସଞ୍ଚାର କରୁଅଛୁ । ଜୀବନର ପ୍ରତ୍ୟେକ ବିଭାଗରେ ପରିବର୍ତ୍ତନ ଘଟାଉଅଛୁ । ଯେଉଁ ଆକାଶ-ବିମାନମାନ ଯୁଦ୍ଧରେ ନିଯୁକ୍ତ ହୋଇ-ଥିଲା ସେମାନ ବର୍ତ୍ତମାନ ଦୂରବର୍ତ୍ତୀ ଦେଶମାନଙ୍କୁ ପରସ୍ପରର ନିକଟବର୍ତ୍ତୀ କରିବା ଲାଗି ବ୍ୟବହୃତ ହେଉଅଛି ।

ଅତି ଦ୍ରୁତଗାମୀ ବାଷ୍ପୀୟ ପୋତରେ ଯେଉଁ ଦେଶମାନଙ୍କୁ ଯିବା-ଲାଗି ଅନେକ ଦିନ ଲାଗୁଥିଲା ସେଠାକୁ ବର୍ତ୍ତମାନ ଏରୋପ୍ଲେନ୍ ସାହା-ଯ୍ୟରେ କେତେକ ଘଣ୍ଟା ମଧ୍ୟରେ ଯାଇହେବ । ଏହାର ଅର୍ଥ ଏହି ଯେ, ବିଭିନ୍ନ ଦେଶର ଲୋକମାନେ ବର୍ତ୍ତମାନ ପରସ୍ପରର ଭାବ ସହଜରେ ଓ ଶୀଘ୍ର ବୁଝି ପାରିବେ ଏବଂ ଅଧିକ ମିଳିମିଶି କାର୍ଯ୍ୟ କରି ପାରିବେ । ତେଣୁ ନିକଟ ଭବିଷ୍ୟତରେ ଅନ୍ୟ ଦେଶର ଲୋକମାନଙ୍କୁ ବିଦେଶୀ ବୋଲି ନ ଭାବି ଆମ୍ଭେମାନେ ଭାଇ ବୋଲି ଭାବି ପାରିବା ଏବଂ ସମଗ୍ର ପୃଥିବୀ ଏକ ପ୍ରବଳ ଭ୍ରାତୃଭାବରେ ସମ୍ମିଳିତ ହେବ ।

ସମାପ୍ତ

Printed at the Orissa Mission Press, by S. F. Robinson
for the Publishers.

## ଗଣିତ :—

ଏହାର ଉତ୍ତରମାଳା (କେବଳ ଶିକ୍ଷକମାନଙ୍କ ନିମନ୍ତେ) ... ଟ • ୵

ଉଚ୍ଚପ୍ରାଥମିକ ଅଙ୍କପୁସ୍ତକ (୩ୟ ଓ ୪ର୍ଥ ମାନ ନିମନ୍ତେ) ରାୟ ମଧୁସୂଦନ
ରାଓ ବାହାଦୁର କୃତ ... ଟ • ।୵

ଏହାର ଉତ୍ତରମାଳା (କେବଳ ଶିକ୍ଷକମାନଙ୍କ ନିମନ୍ତେ) ଟ • ୵

ଓଡ଼ିଆ ପାଟୀଗଣିତ (୫ମ ଓ ୬ଷ୍ଠ ମାନ ନିମନ୍ତେ) ... ମଧୁସୂଦନ ଦାଶ,
ବି. ଏ. ଙ୍କ କୃତ ଟ • ।୵

ଏହାର ଉତ୍ତରମାଳା (କେବଳ ଶିକ୍ଷକମାନଙ୍କ ନିମନ୍ତେ) ... ଟ • ୵

ଅଙ୍କପୁସ୍ତକ (୩ୟ ଓ ୪ର୍ଥ ମାନ ନିମନ୍ତେ) ମଧୁସୂଦନ ଦାଶ, ବି. ଏ. ଙ୍କ କୃତ ଟ • ।୶

ଏହାର (୫ମ ଓ ୬ଷ୍ଠ ମାନ ନିମନ୍ତେ) ଏହାର ଏହାର ଟ • ।୷

୩ୟ, ୪ର୍ଥ ଏବଂ ୫ମ, ୬ଷ୍ଠ ମାନ ନିମନ୍ତେ ଅଙ୍କ ପୁସ୍ତକଦ୍ୱୟର ଉତ୍ତରମାଳା
ଶ୍ରୀ ମଧୁସୂଦନ ଦାଶ, ବି. ଏ. (ହି.) ଙ୍କ କୃତ ... ... ଟ • ୷

ଓଡ଼ିଆ ନବବିଧାନ ଜ୍ୟାମିତି (୩ୟ ଓ ୪ର୍ଥ ମାନ ନିମନ୍ତେ) ରେଭ. ଏ. ଜେମ୍ସ,
ଏମ୍. ଏ. ଙ୍କ କୃତ ଟ • ।୵

ଔପପତ୍ତିକ ଏବଂ ବ୍ୟାବହାରିକ ଜ୍ୟାମିତି (୫ମ ଓ ୬ଷ୍ଠ ମାନ ନିମନ୍ତେ) ଏହାର ଏହାର ଟ • ୩

ଓଡ଼ିଆ ନବବିଧାନ ପରିମିତି (୪ର୍ଥ ମାନ ନିମନ୍ତେ) ଏହାର ଏହାର ଟ • ୷

ଏହାର (୫ମ ଓ ୬ଷ୍ଠ ମାନ ନିମନ୍ତେ) ଏହାର ଏହାର ଟ • ୩

ସ୍କୁଲ ଜ୍ୟାମିତି (୧ମ ଓ ୨ୟ ଖଣ୍ଡ) ... ହଲ୍ ଏବଂ ଷ୍ଟିଭେନ୍ସ ଙ୍କ
(୫ମ ଓ ୬ଷ୍ଠ ମାନ ନିମନ୍ତେ) ... ... ୦ • ୩

## ଇତିହାସ ଓ ଭୂଗୋଳ :—

• ଭାରତରେ ସରକାର ... ଜଜ୍ ମାକ୍‌ନିଲ୍ ବର୍ଡ୍‌ଙ୍କ ଇଂରାଜୀ ଗ୍ରନ୍ଥର
ଉତ୍କଳାନୁବାଦ ... ... ... ... ଟ • ।୷

ଉଚ୍ଚପ୍ରାଥମିକ ଭାରତ ଇତିହାସ (୩ୟ ଓ ୪ର୍ଥ ମାନ ନିମନ୍ତେ) ମଧୁସୂଦନ ଦାଶ, ବି. ଏ. ଓ
ଭୈରବଚନ୍ଦ୍ର ଦତ୍ତ ବି. ଏ. ଙ୍କ କୃତ ଟ • ୩

ମଧ୍ୟ ଓଡ଼ିଆ ଭାରତ ଇତିହାସ (୫ମ ଓ ୬ଷ୍ଠ ମାନ ନିମନ୍ତେ) ଏହାର ଏହାର ଟ • ।୵

ଭାରତବର୍ଷର ଇତିହାସ (୨ୟ ଖଣ୍ଡ)...ମଧୁସୂଦନ ଦାଶ, ବି. ଏ. ଙ୍କ କୃତ ଟ • ୩

ଭାରତ ଇତିହାସର ସରଳ କଥାବଳୀ...ଇ. ମାର୍ସଡେନ୍, ବି. ଏ. ଙ୍କ କୃତ ଟ ୧ ।

ଓଡ଼ିଆ ବିଦ୍ୟାଳୟ-ଭୂଗୋଳପାଠ (୫ମ ମାନର) ଇଉରୋପ ଏହାର ଟ • ୩

ଏହାର ଏହାର (୬ଷ୍ଠ ମାନର) ଆଫ୍ରିକା, ଅଷ୍ଟ୍ରେଲେସିଆ
ଓ ଆମେରିକା ... ଏହାର ଏହାର ଟ ୧ (

